କବିସମ୍ରାଟ

ଉପେନ୍ଦ୍ରଭଞ୍ଜଙ୍କ ପ୍ରଣୀତ

# ଅବନା ରସତରଙ୍ଗ



( ନୂତନ ମୁଦ୍ରଣ )

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, ଅଲିଶା ବଜାର, କଟକ-୨
ଫୋନ୍ ନମ୍ବର—୨୪୭୯୬

ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ

# ଅବନା ରସତରଙ୍ଗ



## ପ୍ରଥମ ଛାନ୍ଦ

ରାଗ—ମାଳବ

ଜୟ ଭକତବତ୍ସଳ (୧) ଜଗତ ଈଶ୍ୱର (୨) ।
ଦଶରଥ ନନ୍ଦନ (୩) ବନ୍ଦନ (୪) ଜନଙ୍କର । ୧ ।

ବରଧନ (୫) ଅନନ୍ତ ଯଶ ଏ ଜଗତର (୬)
କର (୭) ଧନ (୮) ଅନନ୍ତ (୯) ସଜ୍ଜନ ଭକତର (୧୦) । ୨ ।

ରକ୍ଷ (୧୧) ଚକ୍ରଧର (୧୨) କର ସକଳ ସମୟ (୧୩) ।
ରକ୍ଷଚକ୍ର (୧୪) ଧରକର (୧୫) ନବ ରସମୟ । ୩ ।

---

## ଅବନା ରସତର ୧ମ ଛାନ୍ଦରଙ୍ଗ ଅର୍ଥ

ଭକ୍ତାନୁରାଗୀ ୧ ଜଗତ୍କର୍ତ୍ତା ୨ ଦଶରଥ ୩ ରାଜାଙ୍କର ବଡ଼ପୁଅ, ଲୋକମାନଙ୍କର ୪ ପୂଜନୀୟ, ଏ ଭଳି ଯେ ରାମଚନ୍ଦ୍ର ତାଙ୍କର ବନ୍ଦନା କରୁଅଛୁ । ୧ ।

ହେ ରାମଚନ୍ଦ୍ର ! ୬ ଏ ସଂସାରରେ ୯ ବହୁତ ଯଶଃ ୫ ବୃଦ୍ଧି କରୁ ସଜ୍ଜନେ ୧୦ ଭକ୍ତମାନଙ୍କର ୭ ଶ୍ରେଣୀ ୮ ସମ୍ପତ୍ତି ହୋଇଅଛୁ । ୨ ।

ହେ ୧୨ ଶଙ୍ଖଚକ୍ରଧାରୀ ! ତୁମ୍ଭେ ନବରସପୂର୍ଣ୍ଣ ୧୫ ସବୁବେଳେ ୧୦ ରାକ୍ଷସମାନଙ୍କର ୧୫ ଉପଦ୍ରବ ଅଟ, ତୁମ୍ଭେ ଆମ୍ଭମାନଙ୍କୁ ଏହି ସଂସାରର ଅଶୁଭରୁ ୧୧ ରକ୍ଷା କର । ୩ ।

ଲକ୍ଷଣବନ୍ତ (୧୬) ଅଲକ୍ଷ (୧୭) ଲପନ (୧୮) ସହଜ ।
ସକଳ ଲକ୍ଷଣବନ୍ତ (୧୯) ଲକ୍ଷ୍ମଣ ଅଗ୍ରଜ (୨୦) ।୪।
ଧର୍ମବନ୍ତ (୧) ବରମଖ (୨) ରକ୍ଷଣ (୩) ତତ୍ପର ।
ଇନ୍ଦ୍ରପଦ (୪) ବନ୍ଦ ତପସ୍ୱର (୫) ସଙ୍ଗତର ।୫।
ବଡ଼ ଦମ୍ଭପଣ (୬) ହତ (୭) କର ରକ୍ଷ (୨) ଗଣ ।
ଅଶରଣ ଶରଣ ଅମର (୯) ପ୍ରବରଣ (୧୦) ।୬।
ଅକଥନ (୧୧) କର୍ମ (୧୨) କର ପଦ (୧୩) ସ୍ପରଶର (୧୪) ।
ନବ (୧୫) ଅବୟବନ୍ତ (୧୬) ପଥର (୧୭) ।୭।
ନଦ (୧୮) ତରଣର (୧୯) କଇବର୍ତ୍ତ (୨୦) ଅଘହର (୨୧) ।
ଜନକ ଜନପଦ (୨୧) ଗମନ ତତପର (୨୩) ।୮।
କର (୨୪) କଷ କରକଶ (୨୫) ବଶର (୨୬) ପ୍ରଭବ ।
ଖଣ୍ଡନ (୨୮) ଏରଣ୍ଡ ଦଣ୍ଡବତ (୨୯) ଅଜଗବ (୩୦) ।୯।

---

ତୁମ୍ଭର ୧୮ ଶ୍ରୀମୁଖକୁ ୧୬ ଚନ୍ଦ୍ରମା ୧୭ ସମ ନୁହନ୍ତି । ତୁମ୍ଭେ ୧୯ ( ଦ୍ୱାତ୍ରିଂଶ ) ଲକ୍ଷଣରେ ପୂର୍ଣ୍ଣ ଲକ୍ଷ୍ମଣଙ୍କର ୨୦ ବଡ଼ ଭାଇ ଅଟ ।୪।

୧ ତୁମ୍ଭେ ଧର୍ମଶୀଳ ଅଟ, ୫ ବିଶ୍ୱାମିତ୍ରଙ୍କ ସଙ୍ଗରେ ଯାଇ ୨ ଯଜ୍ଞ ୩ ରକ୍ଷା କରିବାକୁ ଚଞ୍ଚଳ ହୋଇ ୪ ଶ୍ରେଷ୍ଠପଦ ଲାଭ କରିଅଛ ।୫।

ତୁମ୍ଭେ ୬ ଅତି ଧୈର୍ଯ୍ୟଶୀଳ ଅଟ ୮ ଅସୁରମାନଙ୍କୁ ୭ ବିନାଶ କରି ଅଶରଣାଗତ ଲୋକଙ୍କର ଶରଣ ହୋଇ ୯ ଦେବତାମାନଙ୍କର ୧୦ ବରଣୀୟ ହୋଇଅଛ । ୬ ।

ତୁମ୍ଭେ ୧୧ ବାକ୍ୟର ଅଗୋଚର ୧୨ କାର୍ଯ୍ୟମାନ କରିଅଛ, ପଥରେ ପଡ଼ିଥିବା ୧୭ ପଥରରେ ୧୩ ତୁମ୍ଭେ ଗୋଡ଼ ୧୪ ଛୁଆଁଇବା ମାତ୍ରେ ସେ ୧୪ ନୂଆ ୧୬ ଦେହ ପାଇଲା । ( ଅର୍ଥାତ୍ ଶାପ ଯୋଗୁ ପଥରରୂପ ଧରିଥିବା ଅହଲ୍ୟା ମୁକ୍ତି ପାଇଲା ) । ୭ ।

ତୁମ୍ଭେ ୧୮ ନଦୀ ୧୯ ପାରହେବା ସମୟରେ ୨୦ ନାଉରିର ୨୧ ପାପ ନାଶ କଲ, ଏଥି ଉତ୍ତାରେ ଜନକ ରାଜାଙ୍କ ୨୨ ରାଜ୍ୟକୁ ୨୩ ଚଞ୍ଚଳ ଗମନ କଲ । ୮ ।

ଉପଯମ (୩୧) ବଶବନ୍ତ ମଙ୍ଗଳ ସର୍ଜନ ।
ଜନକ ନବର (୩୨) ବର (୩୩) ପଦ ସରଞ୍ଜନ । (୩୪) ।୧୦।
ସତ୍ୱର । (୧) ମଣ୍ଡନ (୨) କର (୩) ସବ ଗର୍ବ ହର (୪) ।
ପରମରମ୍ୟ (୫) ବର୍ଦ୍ଧନ (୬) ଲବ ଲବ କର (୭) ।୧୧।
ସ୍ୱଜନସହ (୮) ଗମନ କରଣ, ପଥର (୯)
ସହସ୍ର କର କ୍ଷପ୍ଣକ (୧୦) ଗରବ ଅନ୍ତର । ୧୨ ।
ସଦ୍ଭବନ୍ତ (୧୧) ରହଃସ୍ଥଳ (୧୨) କଳଷର ସଙ୍ଗ ।
ନବ ନବ ରସ ରଚ ନବରଚରଙ୍ଗ ।୧୩।
ଶମଲବଧର (୧୨) ସମ୍ବହର (୧୫) ହସୃଗତ ।
ଅମର (୧୬) ଶରଣ ଭପୃତପ୍ସ । (୧୭) କ୍ଷପୃଅର୍ଥ ।୧୪।

---

୨୫ ଦୃଢ଼ ୨୪ ହସ୍ତରେ ୨୬ ଚେଜରେ କଷ କରିବା ୨୭ ଜମଦଗ୍ନେ ୩୧ ବିଖ୍ୟାତ ଯମପର ୩୦ ପିନାକ ଧନୁକୁ ୨୯ ଗବତ୍ତାଙ୍କ ସଦୃଶ ୨ ଭଗ୍ନ କଲ ଏବଂ ଜନକଙ୍କ ଗୃହରେ ତାଙ୍କର ଝିଅ ଜାନକୀଙ୍କୁ ବଶ ହୋଇ ବଶେଷ ମଙ୍ଗଳ ବିଧାନ କଲ ଏବଂ ୩୨ ଜନକ ରାଜାଙ୍କର ୩୩ ଜାମାତା ପଦରେ ୩୪ ମଣ୍ଡିତ ହେଲେ । ୯ । ୧୦ ।

୪ ସମସ୍ତଙ୍କର ଗର୍ବ ନାଶ କରି ୧ ଶୀଘ୍ର ସୀତାଙ୍କର ପାଣି ଗ୍ରହଣ କରି ୨ ଭୂଷିତ ହେଲ ଏବଂ ୫ମ ଶ୍ରେଷ୍ଠ ମନୋରମ ୭ ମୃଦୁ ଭଙ୍ଗୀକୁ ମୃଦୁ ଭଙ୍ଗୀ ୬ ବର୍ଦ୍ଧନ କଲ । ୧୧ ।

୮ ନିଜର ଲୋକଙ୍କ ସହିତ ୯ ବାଟରେ ଗମନ କରିବାବେଳେ ୧୦ ସହସ୍ରାର୍ଜ୍ଜୁନ ବଧକାରୀ ପରଶୁରାମଙ୍କ ଗର୍ବ ଚୂର୍ଣ୍ଣ କରିଥିଲ । ୧୨ ।

୧୨ ଭାର୍ଯ୍ୟା ( ସୀତା )ଙ୍କ ସହିତ ୧୧ ଗୃହରେ ରହି ୧୨ ନିଭୃତ ସ୍ଥାନରେ ଶୃଙ୍ଗାର ରସଭାବ ନୂଆ ନୂଆ ରତି କ୍ରୀଡ଼ାରେ ମାତିଲେ ।୧୩।

୧୪ ସୁଖଭୋଗ କରୁ କରୁ ଦୁଇ ୧୫ ବର୍ଷ ଗତ ହୋଇଗଲା ୧୬ ଦେବତାମାନଙ୍କର ୧୭ ଭୟ ସବୁ ବିନାଶ ଲାଗି ସେମାନେ ଶରଣ ପଶିଲେ । ୧୪ ।

ସତ୍ୟସନ୍ଧ (୧) ମଣ୍ଡନ (୨) ଜନକ (୩) ବଚସ୍କର ।
ଜଟା ବଳକଳପଟବନ୍ଧ (୪) ବନଚର (୫) ।୧୫।
ଲକ୍ଷଣଶଙ୍କରଧରଣକବନ୍ଧ (୬) ସଙ୍ଗ ।
ଛନ୍ଦନ (୭) ମନ୍ଦନର (୮) ରଚନ ରସରଙ୍ଗ (୯) ।୧୬।
ଅକପଟ (୧୦) ବଣ୍ଡପଣ (୧୧) ସମ୍ପଦ (୧୨) ଅବଶ ।
ସମର୍ପଣ କଟକ (୧୩) ଭରତ ସମପଣ (୧୪) ।୧୭।
ବନଭବନଜନର (୧୫) ମନର ଭରମ ।
ଅବସ୍ଥବକ୍ର (୧୬) ଏମଦନ (୭) ବର (୧୮) ରମ୍ୟ (୧୯) ।୧୮।
ମହତ୍ତ୍ୱମ ସମର୍ପଣ (୨୦) କଳମଷ ହର (୨୧) ।
ଦଣ୍ଡକଗତ (୨୨) ଦଣ୍ଡକ (୨୩) ପଥ ଅଗ୍ରପର (୨୦) ।୧୯।
ଅଭସ୍ମପଞ୍ଜର ତବ ଜଭସ୍ମ (୧) ଅନ୍ତର (୨) ।
ରସ ବର୍ଣ୍ଣନର, ମମ (୩) ମନ ତପତର (୪) ।୨୦।

---

୩ ପିତାଙ୍କର ବଚସ୍କର ହୋଇ ୧ ସତ୍ୟ ୨ ପାଳନ କଲ । ୫ । ତପସ୍ୱୀ ବେଶରେ ୪ ଜଟା ବଳ୍କଳ ଧାରଣ କଲ । ୧୫ ।

୬ ସୀତାଙ୍କୁ ସଙ୍ଗରେ ନେଇ ୭ ପର୍ଣ୍ଣ ୮ କୁଟୀରରେ ୯ ରସକ୍ରୀଡ଼ା ରଚନା କଲ । ୧୫ ।

ଆପଣ ୧୧ ପ୍ରଭୁତ୍ୱ ଓ ୧୨ ରାଜୈଶ୍ୱର୍ଯ୍ୟର ବଶ ନ ହୋଇ ଭରତଙ୍କୁ ସବୁ ଅର୍ପଣ କଲ ଏବଂ ୧୪ ଯଶ ସହିତ ୧୩ ନଗର ୧୦ ସରଳ ଚିତ୍ତରେ ପ୍ରଦାନ କଲ । ୧୭ ।

ରାମଙ୍କୁ ଦେଖି ୧୫ ଋଷିମାନଙ୍କ ମନରେ ଭ୍ରମ ଜାତ ହେଲା । ଏ ତ ୧୮ ପରମ ୧୯ ମନୋହର ରୂପ ଧରି ଅଛନ୍ତି । ୧୭ କନ୍ଦର୍ପ ପୁଣି ୧୬ ଦେହ ଧାରଣ କଲା କି ? । ୧୮ ।

୨୦ ଅତିଶୟ ସମଦର୍ଶୀ ୨୧ ପାପ ହରଣକାରୀ ରାମ ୨୨ ଦଣ୍ଡକାରଣ୍ୟକୁ ଯିବାବେଳେ ବାଟରେ ୨୪ ରାକ୍ଷସ (ବିରାଧ) କୁ ୨୩ ବଧ କଲେ । ୧୯ ।

ହେ ଅଭସ୍ମପଞ୍ଜର ! ୧ ତୁମ୍ଭେ ଏବଂ ସୀତା ଏ ଦୁହିଁଙ୍କର ୨ ବିଚ୍ଛେଦ ବର୍ଣ୍ଣନା କରିବାକୁ ୩ ମୋହର ମନରେ ଅତିଶୟ ୪ ଦୁଃଖ ହେଉଅଛି । ୨୦ ।

ସଦସ୍ତୁ (୫) କର ସଦସ୍ତୁ ଅର୍ଣ୍ଣବ (୬) ବଦନ [୭] ।
କର ଉତ୍ତମ ରସଜ୍ଞ ଜନ ତନମନ (୮) ।୨୧।
ନକ୍ଷସଦ (୯) ଭୁରଗ (୧୦) ନର (୧୧) ବରପ (୧୨) ଦର ।
କନକ [୧୩] ନଗରଈଶ [୧୪] ଦଶବଦନର [୧୫] ।୨୨।
ଏକ ଉଦର ଜନନ [୧୬] ଗନ୍ଧଗ୍ରହ କର୍ଣ୍ଣ (୧୭) ।
ଖଣ୍ଡନ [୧୮] ଦଣ୍ଡ ଦର୍ଶନ କ୍ଷଣ ଛନ ଛନ । ୨୩ ।
ଖର [୧୯] ଖଭ [୨୦] ଦହନ [୨୧] ଗହନ [୨୨] ମଧ୍ୟଗତ (୨୩)
ଦଶକନ୍ଧର [୨୪] ଲବଧ [୨୫] ଏମନ୍ତ ଉଦନ୍ତ (୨୬) ।୨୪।
ଦଣ୍ଡକଅରଣ୍ୟ ଗତ (୨୭) ଏମନ୍ତ ଲମ୍ପଟ (୨୮) ।
ରକ୍ଷ (୨୯) ଜଣଙ୍କ ରଚନ ଏକେ (୩୦) କପଟ (୩୧) ।୨୫।
ଛତକ୍ଷଣ କନକ (୧) କମଳର (୨) ଇକ୍ଷଣ (୩) ।
ସ୍ୱର୍ଣ୍ଣନଗ (୪) ସର (୫) ସମ ଉଟଜ ଅଙ୍ଗଣ (୬) । ୨୬ ।

---

୬ ହେ କରୁଣାସାଗର ! ୭ ଶୀଘ୍ର ୫ ସୁଦୟା କର, ହେ ଉତ୍ତମ ରସଜ୍ଞ ବ୍ୟକ୍ତିମାନେ ! ଏଥିରେ ଲୟ କର । ୨୧ ।

୯ ଦେବତା ୧୦ ନାଗ ୧୧ ମନୁଷ୍ୟ ଅର୍ଥାତ୍ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏ ତିନ ପୁରର ୧୨ ଗର୍ବହର ଏବଂ ୧୩ ସ୍ୱର୍ଣ୍ଣମୟ (ଲଙ୍କା) ୧୪ ପୁରର ଅଧିପ ୧୫ ରାବଣ— । ୨୨ ।

୧୬ ଏକୋଦର ସୂର୍ପଣଖାର ୧୭ ନାସା, କର୍ଣ୍ଣ ୧୮ ଛେଦନ ଦଣ୍ଡ ଦେଖିଲାକ୍ଷଣି ଛନ୍ନ ଛନ୍ନ ହେଲା । ୨୩ ।

ଏବଂ ୨୨ ଅରଣ୍ୟ ୨୩ ମଧ୍ୟରେ ଥିବା ୨୧ ଖରନାମା ଦୈତ୍ୟ ୨୧ ନାଶ ହେବା ୨୬ ସମ୍ବାଦ ୨୪ ରାବଣ ୨୦ ବଦନ ୨୫ ପ୍ରାପ୍ତ ହେଲା ।୨୪।

୨୮ ଶଠତା କରି ୨୯ ରାକ୍ଷସ ଜଣକୁ ୩୧ ମାୟାରେ ୩୦ ସ୍ୱର୍ଣ୍ଣମୃଗ କରି ଦଣ୍ଡକାରଣ୍ୟକୁ ୨୭ ପଠାଇଲା । ୨୫ ।

ସେ ଛଦ୍ମମୃଗ ୬ ପତ୍ର କୁଟୀରର ଅଗଣାରେ କ୍ରୀଡ଼ା କରିବାରୁ ସେ ସ୍ଥାନ ସେ ସମୟରେ ୪ ହିମାଳୟର ୫ ମାନସରୋବରର ପରି ହୋଇଥିଲା । ମାନସରୋବରରେ ୧ ସୁବର୍ଣ୍ଣ, ୨ ପଦ୍ମ ଫୁଟିବାର ୩ ଦେଖାଗଲା ଭଳି ଏଠାରେ ସୁବର୍ଣ୍ଣମୃଗ ଦେଖାଗଲା । ୨୬ ।

ଲଙ୍ଘନ ଅଗ୍ରଣବବଧରଣ (୭) ଅଗ୍ରତ ।
ଝଂକ ଝଂଟ ଚହଟ (୮) ଚଳ ଅନବରତ (୯) । ୨୭ ।
ଦଣ୍ଡ ଚରଣଗନ ଷଣ ଦଇବର ବଳ ।
ଧବ (୧୦) ଅଗ୍ରତ ଏସନ କଥନ ଚପଳ (୧୧) ।୨୮।
ଉଠ ଈଶ (୧୨) ସନ୍ଧ ସର (୧୩) ବଧ ଏ ଚମର (୧୪) ।
ବର କବର (୧୫) ଗର୍ଭକ ଅର୍ଥ ଦତ୍ତ ଭଳ । ୨୯ ।
ନଟବର (୧୬) ବଟବଣ ସ୍ୱଜନର (୧୭) ବତ ।
ଖରପର (୧୮) ଗମନ କରଣ ସମମତ (୧୯) । ୩୪ ।
ଫବନରଥ (୧) ଚଲ୍ଲର (୨) ଅନ୍ତର ସଲ୍ଲର (୪)
ଚରମ (୩) ଗଢ ଅନନ୍ତ ପ୍ରହରକ ଶର । ୩୧ ।
ମରଣର ବଶ (୫) କର ଅମଙ୍ଗଳ (୬) ସ୍ୱର । (୭) ।
ଶ୍ରବଣ (୮) ପୂର୍ଣ୍ଣସବନ (୯) ଦ୍ୱୟ ଜନଙ୍କର (୧୦) ।୩୨।

---

ସେ ମୃଗ ୭ ସୀତାଙ୍କ ଆଗରେ ୯ ସବୁବେଳେ ଝଂକ ଝଂଟ ୮ ତେଜରେ ଚଳି ବୁଲିଲା । ୨୭ ।

ଦୈବଯୋଗରୁ ସୀତା ସେହି ମୃଗକୁ ଦେଖି ତାହାଠାରେ ବଶ ହୋଇ ୧୦ ସ୍ୱାମୀଙ୍କ ଆଗରେ ୧୧ ଚଞ୍ଚଳ ଏହା କହିଲେ । ୨୮ ।

ହେ ୧୨ ଈଶ ! ଚଞ୍ଚଳ ଉଠ ୧୩ ଶର ମାରି ୧୪ ଏହି ମୃଗକୁ ହତ କର ଏବଂ ଏହାର ୧୫ ଉତ୍ତମ ପୁଚ୍ଛକୁ ମୁଁ ଚହଁସ୍ୱା କରିବାପାଇଁ ମୋତେ ଆଣିଦିଅ ।୨୯।

୧୬ ନଗରର ଲୋକମାନେ ୧୭ ରାଜାଙ୍କ ଆଦେଶର ବଶ ହେବା ଭଳି ୧୮ ରାମଚନ୍ଦ୍ର ସୀତାଙ୍କ କଥାରେ ଗମନ କରିବାକୁ ୧୯ ସମ୍ମତ ହେଲେ । ୩୦ ।

୧ ସେ ମୃଗ ୪ ଅତିଶୀଘ୍ର ୨ ଅଗଣାରୁ ପଳାଇ ଯାଆନ୍ତେ ୩ ରାମଚନ୍ଦ୍ର ତାହାର ପଛେ ପଛେ ଯାଇ ଶର ପ୍ରହାର କଲେ ।୩୧।

୫ ସେ ମୃଗ ମଲାବେଳେ (ଲକ୍ଷ୍ମଣ ହାହାକର ବୋଲି) ୬ ଅମଙ୍ଗଳଜନକ ୭ ଶବ୍ଦ କଲା, ସେ ଶବ୍ଦ ୯ ପର୍ଣ୍ଣକୁଟୀରେ ଥାଇ ୧୨ ସୀତା ଓ ଲକ୍ଷ୍ମଣ ଏ ଦୁହିଙ୍କୁ ୮ ଶୁଭିଲା । ୩୨ ।

ଗମନ (୧୧) ଉଦ୍ୟମ (୧୨) ଲକ୍ଷ୍ମଣର ଅଦର୍ଶନ (୧୩)
ଜ୍ଷଣ (୧୪)ପଦ୍ମବଦନ (୧୫) କଥନ ଏସନ ।୩୩।
ରଖ ଲକ୍ଷ୍ମଣ ଶବଦ ଶ୍ରବଣ ସହଜ ।
ନ କର ତ ଗମନ ଭରତ ଅବରଜ [୧୬] ।୩୪।
ମମ (୧୭) ବଲ୍ଲଭ (୧୮)ର ସହ [୧୯] କପଟ [୨୦] ଗମନ ।
ଭରତ କଳତ୍ର (୨୧) କରଣର ତବ ମନ [୨୨] ।୩୫।
ଅନୁସରଣ ଗତ ଭଲ୍ଲ (୨୩) ଏ ବଚନ (୨୪) ।
ଅମରଷବଶ (୨୫) ଗତ ଚମ୍ପକବରନ (୨୬) ।୩୬।
ଏ ସମୟ [୧]ଦଶକନ୍ଧ (୨) କପଟ ତପସ [୩] ।
ରଚନ ମନରଞ୍ଜନ ବଚନ ରହସ ।୩୭।
ଅସମମତର (୪) ତରତର (୫) ବନକର [୬] ।
ଛମ ଧରଷଣ [୭] ବତ [୮] ହର (୯) ଶଶଧର (୧୦) ।୩୮।

---

କିନ୍ତୁ ସେଥିରେ ଲକ୍ଷ୍ମଣଙ୍କୁ ୧୧ ଯିବାର ୧୨ ଉଦ୍‌ବେଗ ୧୩ ନ ଦେଖି ୧୪ ବୈଦେହୀ ୧୫ ପଦ୍ମାକ୍ଷୀ ସୀତା ଏହିପରି କହିଲେ ।୩୩।

୧୬ ଭରତଙ୍କ କନିଷ୍ଠ "ଆହେ ଲକ୍ଷ୍ମଣ ରକ୍ଷାକର" ଏ ଶବ୍ଦ ତ ଶୁଣିଲ, ତେବେ ଶୀଘ୍ର ଗମନ କରୁନାହଁ କିଆଁ ? ।୩୪।

୧୭ ମୋହର ୧୮ ସ୍ୱାମୀଙ୍କ ୧୯ ସଙ୍ଗେ ୨୦ କପଟ କରି ଆସିଛ କି ? ୨୨ ତୁମ୍ଭେ ମନେ କରିଛ ମୋତେ ନେଇ ଭରତଙ୍କର ୨୧ ଘରଣୀ କରିବେବ ।୩୫।

୨୬ ଚମ୍ପକବରଣୀ ସୀତାଙ୍କର ୨୪ ଏ କଥା ଲକ୍ଷ୍ମଣଙ୍କର ହୃଦୟରେ ୨୩ ଭଲ୍ଲ ପରି ହେଲରୁ ସେ ୨୫ କ୍ରୋଧଭର ହୋଇ ବାହାରି ଗଲେ ।୩୬।

୧ ଏହି ସମୟରେ ୨ ରାବଣ ୩ ମାୟାରେ ତପସ୍ୱୀ ବେଶ ଧରି ରହସ୍ୟ ଛଳରେ ମନ ଭୁଲାଣିଆ କଥା ସବୁ କହିବାକୁ ଆରମ୍ଭ କଲା ।୩୭।

ସେହିସବୁ କଥାରେ ୪ ସୀତା ନ ମଙ୍ଗିବାରୁ ୧୦ ପୂର୍ଣ୍ଣଚନ୍ଦ୍ରକୁ ୭ ରାହୁ ଗ୍ରାସିଲା ୮ ଭଳି ୯ ରାବଣ ୫ ତର ତର ହୋଇ ସୀତାଙ୍କୁ ୬ ବଳାତ୍କାରରେ ୯ ହରଣ କଲା । ୩୮ ।

ମର୍ତ୍ତ୍ୟଭବ (୧୧) ବନଜ ଭୁବନ ଜନ [୧୨] ସତ ।
ନୟନ [୧୩] ଲପନ (୧୪) କର (୧୫) ପଦ (୧୬) ତଧବତ (୧୭)
ଉନ୍ନତ [୧୮] ଉରଜ (୧୯) କଢ଼ ଉଦରର ଛଦ (୨୦) ।
ଲଙ୍କଈଶ (୨୧) ପ୍ରଭଞ୍ଜନ [୨୨] ହତ (୨୩) ସକମ୍ପନ (୨୪) ।୪୦।
ଜନକ (୧) ଆପଣ [୨] ତପ [୩] ଅର୍ଜନ (୪) କନକ (୫)
କମଳଭବ (୬) ରଚନ ଉତ୍ତମ ପଦକ ।୪୧।
ମହତ [୭] ନରବରଜ (୮) ବକ୍ଷର ମଣ୍ଡନ (୯) ।
କର୍ମ (୧୦) ମଦ୍ୟପ (୧୧) ତସ୍କର [୧୨] କରର ପତନ (୧୩) ।୪୨।
ରଥଗତ କ୍ଷଣ ଘନ [୧୪] ସମୟର ସମ ।
ନୟନ ଜଳଦ [୧୫] ଗଣ୍ଡସ୍ଥଳ କରଦମ ।୪୩।

---

ସୀତା ୧୧ ମର୍ତ୍ତ୍ୟରେ ଜନ୍ମ ଲଭିଅଛନ୍ତି ସତ୍ୟ ୧୨ ତଥାପି ସେ ପଦ୍ମାଳୟା। ଏଣୁ ପଦ୍ମପରି ଅଟନ୍ତି ତାଙ୍କର ୧୩ ନେତ୍ର ୧୪ ମୁଖ ୧୫ ହସ୍ତ ୧୬ ପାଦ ସେସବୁ ପଦ୍ମ ୧୭ ତୁଲ୍ୟ ହୋଇଅଛି । ୩୯ ।

ଏବଂ ତାଙ୍କର ୧୮ ଉଚ୍ଚ ୧୯ କୁଚ ପଦ୍ମକଢ଼ୀ ଓ ଉଦର ୨୦ ପଦ୍ମପତ୍ର ପରି ହୋଇଅଛି ଏଭଳି ଯେଉଁ ପଦ୍ମଲତା-ସୀତା, ତାଙ୍କୁ ୨୧ ଲଙ୍କାର ଈଶ୍ୱର ରାବଣ ୨୨ ପବନ ୨୩ ତୁଲ୍ୟ ହୋଇ ୨୪ କମ୍ପମାନ କରାଇଲା ।୪୦।

୧ ଜନକନାମକ ୨ ବଣିକ ୩ ତପ ପ୍ରଭୃତି ବଣିଜରୁ ୫ ସୁବର୍ଣ୍ଣ ଭଳି ସୀତାଙ୍କୁ ୪ ଲାଭ କଲେ ୬ ବିଧାତା ତାଙ୍କୁ ନେଇ ଉତ୍ତମ ପଦକ ନିର୍ମାଣ କଲା ।୪୧।

ସେହି ଏଦକ ୭ ଶ୍ରେଷ୍ଠ ୮ ରାଜନନ୍ଦନ ( ଶ୍ରୀରାମଙ୍କର ) ବକ୍ଷସ୍ଥଳରେ ୯ ଶୋଭା ପାଉଥିଲା ଏବେ ୧୦ ତାହା ଦୈବ ଯୋଗରୁ ୧୧ ମଦୁଆ ୧୨ ଲଙ୍କାଏତ (ଦଶାନନର) ୧୩ କବଳରେ ପଡ଼ିଲା ।୪୨।

ସେ ସୀତାଙ୍କୁ ରଥରେ ବସାଇବାମାତ୍ରେ ସୀତା ୧୪ ବର୍ଷାକାଳ ଭଳି ହେଲେ । ସୀତାଙ୍କ ନେତ୍ରରୂପ ୧୫ ମେଘରୁ ଜଳ ବରଷି ଗଣ୍ଡସ୍ଥଳକୁ ତାଙ୍କର ଓଦା କଲା ।୪୩।

ନଖଜନମ (୧୬) ମଜ୍ଜ (୧୭) ଦ୍ୱୟ ସ୍ତନତଟ ।
ଗନ୍ଧଗ୍ରହ (୧୮) ପବନ (୧୯) ପ୍ରଖର ପରକଟ (୨୦) ।୪୪।
କଳକଣ୍ଠ (୨୧) କଣ୍ଠବନ୍ଦ ତମସ (୨୨) ଜଗତ ।
ଅଦରଶନ ଧବଳକର (୨୩) ହାସ ସତ ।୪୫।
ପତନ କଷ୍ଟ ଚଡ଼କ (୧) ଦନ୍ତଧର ପର (୨) ।
ଉଚ୍ଚରବ ଷଡ଼ଜ (୩) ଶବଦ କର କର । ୪୬ ।
ଅସ୍ରପଇନ୍ଦ୍ର (୪) ଶବର (୫) ବନଗତ (୬) ମତ ।
ଖଗବର ତନୟ (୭) ସରଭ (୮) ଉପଗତ (୯) ।୪୭।
ଭୟ ସରଥ (୧୦) ଭକ୍ଷଣ (୧୧) ସମୟ ବମନ (୧୨) ।
ହସ୍ତଗତ (୧୩) ଖଡ୍ଗବର (୧୪) ତକ୍ଷଣ (୧୫) ଛଦନ (୧୬) ।୪୮।

---

ନେତ୍ରଜଳଦରେ ୧୬ ନଖ ଜନ୍ମ ହୋଇ ବକ୍ଷସ୍ଥଳର ଦୁଇସ୍ତନ ତଟକୁ ୧୭ ବୁଡ଼ାଇ ଦେଲା । ବର୍ଷା ସମୟରେ ୧୯ ପବନ ୨୦ ପ୍ରଖର ଭାବରେ ବହିଲା ପରି ସୀତାଙ୍କର ୧୮ ନାକରୁ ବେଗ ବେଗ ହୋଇ ନିଃଶ୍ୱାସ ବହିଲା । ୪୪ ।

ବର୍ଷା ସମୟରେ ୨୧ କୋକିଳର କଣ୍ଠସ୍ୱର ବନ୍ଦ ହୋଇଯାଏ ପୃଥିବୀ ୨୨ ଅନ୍ଧାର ଦିଶେ ୨୩ ଚନ୍ଦ୍ର ଦେଖାଯାନ୍ତି ନାହିଁ । ଏଠାରେ ସୀତାଙ୍କର ହାସ-ରୂପ-ଚନ୍ଦ୍ର ଲୁଚିଗଲା । ୩୫ ।

ସୀତାଙ୍କର ୨ ଦନ୍ତରୂପ-ପର୍ବତରେ କଷ୍ଟରୂପ ୧ ବଜ୍ରପାତ ହେଲା, ବର୍ଷାରେ ୩ ମୟୂର ରାବ କରେ ଏଠାରେ ସୀତା ଥରକୁ ଥର ପାଟିକରି କାନ୍ଦିଲେ । ୪୬ ।

୪ ରକ୍ଷସାଧିପ ଦଶାନନ ୫ ବାଣୁଆ ଭଳି ୬ ବଣ ଭିତରେ ଯାଉଥିଲା । ସେଠାରେ ୭ ଜଟାୟୁ ୮ ଅଷ୍ଟପଦମୃଗ ଭଳି ୯ ପହଞ୍ଚିଲା ।୪୭।

୧୦ ରଥ ସହିତ ରାବଣକୁ ୧୧ ଗିଳିବାବେଳେ ସୀତା ଥିବାର ଦେଖିପାରି ଭୟରେ ୧୨ ବାନ୍ତ କଲା । ୧୫ ସେତିକିବେଳେ ରାବଣର ୧୩ ହାତରେ ଥିବା ୧୪ ଖଡ୍ଗରେ ଜଟାୟୁର ୧୬ ଡେଣା ହାଣି ପକାଇଲା । ୪୮ ।

ପତଙ୍ଗ (୧୭) ବତ (୧୮) ସ୍ୟନ୍ଦନ (୧୯) ଗମନ ଗଗନ ।
ଧରଦନ୍ତ (୨୦) ପଟସ୍ଥ (୨୧) ପ୍ଲବଗ (୨୨) ପଞ୍ଚଜନ ।୪୯।
ଦରଶନ (୨୩) ବଲ୍ଲଭ (୨୪) ଘଣ (୨୫) ପ୍ରକଟକ (୨୬) ।
ପତନକର (୨୭) ବସନ (୨୮) ରତନ କଟକ (୨୯) ୫୦ ।
ଅର୍ଣ୍ଣବ ମଧ୍ୟ ନଗର (୧) ଉପବନ ସ୍ଥଳ (୨)
ରକ୍ଷ (୩) ସଉଧ (୪) ସଦନ (୫) ମଧ୍ୟଗତ (୬) ଖଳ (୭) ।୫୧।
ସହସ ନୟନ (୮) ଦତ୍ତ (୯) ଅମରଅଶନ (୧୦) ।
ତତକ୍ଷଣେ ସପ୍ରସନ୍ନ (୧୧) ସକଳ କଥନ ।୫୨।
ନମ ଲପନ (୧୨) ଏକତ (୧୩) ଗଣ୍ଡ ଖଣ୍ଡ (୧୪) କର (୧୫) ।
ସଜଳ (୧୬) ଇକ୍ଷଣ (୧୭) ଉଚସ୍ଥଳ (୧୮) ଜର ଜର ।୫୩।
ବଲ୍ଲଭ (୧୯) ଜପ ରସନ କର ପଲ୍ଲବର (୨୦) ।
ଏସନ କଷଣ ସହ ସମ୍ପଦର ଘର (୨୨) ।୫୪।

---

୧୯ ରଥ ୧୭ ପକ୍ଷୀ ୧୮ ଭଳି ଆକାଶକୁ ଉଡ଼ିଗଲା । ୨୦ ପର୍ବତ ୨୧ ଶୃଙ୍ଗ ଉପରେ ରହିଥିବା ପାଞ୍ଚଗୋଟା ୨୨ ବାନର । ୪୯ ।

୨୩ ଦେଖିଲେ ମାତ୍ର ସୀତା ନିଜର ୨୪ ସ୍ୱାମୀଙ୍କର ୨୫ କାନ୍ତିମାନ ୨୬ ପ୍ରକାଶ କରି ନିଜର ୨୮ ଅମ୍ଳାନ ବସନ ଏବଂ ରତ୍ନଚୂଡ଼ି ସେ ସ୍ଥାନକୁ ୨୭ ଫିଙ୍ଗିଦେଲେ । ୫୦ ।

୧ ସମୁଦ୍ର ମଧ୍ୟରେ ଥିବା ଲଙ୍କାପୁରର ୨ ଉଦ୍ୟାନସ୍ଥ ୪ କୋଠା ୫ ଘର ୬ ମଧ୍ୟରେ ୭ ଦୁଷ୍ଟରାବଣ ସୀତାଙ୍କୁ ନେଇ ୩ ରଖିଲା । ୫ ।

୮ ଇନ୍ଦ୍ର ଆସି ତାଙ୍କୁ ୧୦ ଦେବତାଙ୍କ ଆହାର (ଅମୃତ) ୯ ଦେଇଗଲେ ଏବଂ ୧୧ ସନ୍ତୁଷ୍ଟ ହୋଇ ସେତିକିବେଳେ ରାବଣ ପ୍ରଭୃତିଙ୍କର ମରଣ ବାର୍ତ୍ତା କହିଗଲେ ।୫୨।

ସୀତା ୧୪ ଗଣ୍ଡସ୍ଥଳ ଓ ୧୫ ହସ୍ତ ୧୩ ଏକାଠି କରି ୧୨ ମୁହଁ ପୋତି ବସିଲେ । ଲୁହରେ ୧୭ ଆଖି ୧୬ ପୂରିଗଲା ୧୯ ବକ୍ଷସ୍ଥଳ ଜର ଜର ହୋଇ ଉଠିଲା । ୫୩ ।

୧୯ ରାମଚନ୍ଦ୍ର ୨୧ ସବୁ ସମ୍ପତ୍ତିର ଖଣିସ୍ୱରୂପ ସୀତା ଏହି କଷ୍ଟ ଉପର ସହିଛୁ ଏ ବିଷୟ ୨୦ ପଦ୍ମହସ୍ତରେ ଜପ କଲେ । ୫୪ ।

ଉପଇନ୍ଦ୍ର କରଇ ସହସ୍ର ଦଣ୍ଡବତ (୨୨)
ଜନମ ଜନମ କର ତବର ଭକତ ।୫୫।

———

## ଦ୍ୱିତୀୟ ଛାନ୍ଦ

ରାଗ—ବଙ୍ଗଶ୍ରୀ

ଏ ଅନନ୍ତ (୧) ରସ କର ଶ୍ରବଣ ସଜ୍ଜନ (୨) ।
ଏଣ (୩) ହତ (୪) କ୍ଷଣ, ଗତ ବସନ୍ତ ବସନ (୫) ।୧।
ଛଦନ (୬) ସଦନ (୭) ଅପ୍ରସନ (୮) ଦରଶନ ।
ଦମ ଦମ ବକ୍ଷ (୯) ସ୍ୱଚ୍ଛ ମନ ଛନ ଛନ (୧୦) ।୨।
ଜଚ ବଚ (୧୧) ରଚନ ଉଦକ (୧୨) କର ବଞ୍ଚ ।
ରଚ କଚ (୧୩) ଯତନ, ରଚନ ଏଣ (୧୪) ହତ ।୩।

---

କବ ଉପେନ୍ଦ୍ର ଭଞ୍ଜଙ୍କର ସେହି ସୀତାରାମଙ୍କୁ ସହସ୍ର ସଂଖ୍ୟକ ୨୨ ପ୍ରମାଣ, ହେ ପ୍ରଭୁ ! ଜନ୍ମେ ଜନ୍ମେ ମୋତେ ତୁମ୍ଭର ଭକ୍ତ କର । ୫୫ ।

———

## ଦ୍ୱିତୀୟ ଛାନ୍ଦର ଅର୍ଥ

୨ ହେ ପଣ୍ଡିତମାନେ ! ୧ ଏଥି ଉତ୍ତାରୁ ଯେଉଁ ରସ ତାହା ଶ୍ରବଣ କର । ୩ ମୃଗ ୪ ବଧ ହେବାରୁ ୫ ପୀତବସନଧାରୀ ରାମଚନ୍ଦ୍ର ସେ ମୃଗକୁ ନେଇ ପତ୍ରକୁଡ଼ିଆକୁ ଲେଉଟି ଆସିଲେ । ୧ ।

୬ ପତ୍ର ୭ କୁଡ଼ିଆର ୮ ମଳିନତା ଦେଖି, ଶ୍ରୀରାମଚନ୍ଦ୍ରଙ୍କର ୯ ବକ୍ଷସ୍ଥଳ ଦମ ଦମ ହେଲା ଏବଂ ତାଙ୍କର ସ୍ୱଚ୍ଛ ମନ ୧୦ ଚଞ୍ଚଳ ହେଲା । ୨ ।

କୁଡ଼ିଆରେ ସୀତାଙ୍କୁ ନ ଦେଖି ୧୨ ଜଳ ହଅ ବୋଲି ୧୧ ଉଚ୍ଚ-ସ୍ୱରରେ ଡାକ କହିଲେ ଏହି ସ୍ୱର୍ଣ୍ଣ ୧୪ ମୃଗ ବଧ କରି ଆଣିଲୁଁ ଏବେ ୧୩ କେଶକୁ ଯତ୍ନପୂର୍ବକ ରଚନା କର । ୩ ।

ଧନ (୧୫) ଅଜନ (୧୬) ବଦନ ଏ ମଉକ (୧୭) ବଦ ।
କଦ କଦ ବଚନ ଉଚ୍ଛନ୍ନ (୧୮) ବଦ, ବଦ ।୪।
ଚବଦ (୧୯) ଏ ଶବଦ ଅଶ୍ରବଣର (୨୦) ଘନ (୨୧) ।
ସବନ ଗମନ, କମ୍ପବଦ ଅପଘନ (୨୨) ।୫।
ଅବରଣନ (୨୩) ବଶର (୨୪) ସଚ ସ୍ତମ୍ଭର (୨୫) ।
ଜଳ କରକ (୨୬) ଅନଳ (୨୭) ମଧ୍ୟ ବତ୍ତକର ।୬।
ଧନ ଧନ ଉଚ୍ଚ ସ୍ୱନ କର ଘନ ଘନ ।
ଶଚବଳ (୧) ଦଳନ (୨) ନୟନ (୩) ଥନ ଥନ ।୭।
କଥନ ମମ ହରଷ ମଥନ (୪) ନ କର ।
ଘଟ ଉପର ଲଟ ଏ, ହଟ ହର ହର ।୮।
ନରଇନ୍ଦ୍ର ପଦ (୫) ଧନ ସମ୍ପଦ (୬) ତ୍ୟଜତ ।
ବନଗତ ତବ ଅନ୍ତର ଅସନମତ (୭) ।୯।

---

୧୫ ହେ ସୀତେ, ୧୬ ଏହି ନିର୍ଜନ ବନରେ ୧୭ ମୋର ବ ମୁଖ ନାହିଁ, ବଚନ କହ କହ ଏବଂ ମୋହର ୨୮ ଚଞ୍ଚଳତାକୁ ଶୀଘ୍ର ଶୀଘ୍ର ବଦନ କର । ୪ ।

ଶ୍ରୀରାମଚନ୍ଦ୍ରଙ୍କର ଏହି କଥା କେହି ନ ଶୁଣିବାରୁ ସେ ପ୍ରତ୍ୟୁତ୍ତର ନ ପାଇ ୨୧ ଅତିଶୟ ୧୯ ସ୍ତବ୍ଧ ହେଲେ, ୨୨ ତାଙ୍କ ଦେହ କମ୍ପି ଉଠିବାରୁ କୁଟୀରକୁ ଗମନ କଲେ ।୫।

କୁଟୀର ମଧ୍ୟରେ ସୀତାଙ୍କୁ ୨୩ ନ ଦେଖିବା ୨୪ ହେତୁରୁ ୨୫ ସ୍ତମ୍ଭୀଭୂତ ହୋଇ ୨୬ କମଣ୍ଡଳୁରେ ଥିବା ଜଳ ୨୭ ଅଗ୍ନି ଭଳରେ ପକାଇ ଦେଲେ । ୬ ।

ଶ୍ରୀରାମ ଚଞ୍ଚଳ ହୋଇ ହେ ଧନ ବୋଲି ଉଚ୍ଚସ୍ୱରରେ ପୁନଃ ପୁନଃ ଡାକ ୧ ଇନ୍ଦ୍ର ୨ ଦଳନକାରୀ ୩ ନେତ୍ରକୁ ଥନ ଥନ କଲେ ।୭।

କହିଲେ ହେ ସୀତେ ! ମୋର ହରଷ ୪ ମନ୍ଥନ ନ କର, ଏ ଯେଉଁ ଘଟ ଏହା ଉପରେ ହଟ ଲଗାଇଛ ଏହା ହରଣ କର ।୮।

ହେ ସୀତେ ! ୫ ରାଜପଦ ଓ ୬ ସମ୍ପତ୍ତି ତ୍ୟାଗ କଲୁ ମାତ୍ର ତୁମ୍ଭଙ୍କୁ ତ୍ୟାଗ ୭ ନ କରି ସଙ୍ଗରେ ଘେନି ବନକୁ ଆସିଲୁ ।୯।

ଏ ଢଙ୍ଗ (୮) ବଣକ ଶ୍ୱଵ (୯) ଜଗତର ଭୂନ (୧୦)
ତବ ରସଜ୍ଞ (୧୧) ଜଭ୍ରମ କର ବର ମନ ।୧୦।
ନୟନ ସଙ୍ଗ ନୟନ ଚଳନ ଚତ୍ୱଟ (୧) ।
ହସ ହସ ପ୍ରସନ୍ନ ବଦନ ଝଟ ଝଟ (୨) ।୧୧।
ସଦନ କରଇ ମନ ଧନ ସ୍ମରଣର (୩) ।
ମମ ଅନ୍ତର (୪) ଧରମ ଅଗମ୍ୟ ବନର ।୧୨।
ନବ ସଙ୍ଗମ ସମୟ (୫) ସତ୍ୟ ଲୟ କର (୬) ।
ଚବମନ (୭) ଶରଣଜଣର ନ ଉଦ୍ଧର ।୧୩।
ପଦ ଅଳକ୍ତ ତର ରଞ୍ଜନକର ଜନ (୮) ।
ଅମରଷ (୯) ଅରହଣ (୧୦) କର ତବ (୧୧) ମନ (୧୨) ।୧୪।
ଅସମକଳମ୍ବ (୧୩) ଭସ୍ମ ନ ଧର ଏ ମଦ (୧୪) ।
ବଡ଼ ଉତ୍ସବ ଅନଙ୍ଗ ମନମଥ ପଦ ।୧୫।

---

ଏବେ ଏଠାରେ ୮ ଏପରି ୯ ମାୟାରୀ ଭ୍ରବ ଧରିବା ଜଗତକୁ ୧୦ ଅସୁନ୍ଦର ଅଟଇ ୧୧ ତୁମ୍ଭକୁ ତ ରସ ଜଣା ଅଛି ମନକୁ ଉତ୍ତମ କର ।୧୦।

ନେତ୍ରକୁ ନେତ୍ର ମିଶାଇ ୧ ସତେଜରେ ଚଳନ କର, ତୁମ୍ଭର ହାସ୍ୟପୂରିତ ୨ ସୁନ୍ଦର ମୁଖକୁ ଦେଖାଅ ।୧୧।

ହେ ସୀତେ ! ୩ ତୁମ୍ଭଙ୍କୁ ଆଲିଙ୍ଗନ କରିବାକୁ ମୋହର ମନ ଅସ୍ଥିର, ହେଉଛି, ଏହି ଅଗମ୍ୟ ବନରେ ମୋତେ ୪ ଦୂର କରିବା ଉଚିତ କି ? ।୧୨।

ହେ ସୀତେ ୫ ମଧୁଶଯ୍ୟା ଗୃହରେ ଯେଉଁ ସତ୍ୟ କରିଥିଲ ତାହା ୬ ସ୍ମରଣ କର । ଶରଣାଗତ ଲୋକକୁ ଉଦ୍ଧାର କର ବା ନ କର ୭ ତୁମ୍ଭର ଇଚ୍ଛା ।୧୩।

୮ ତୁମ୍ଭର ପାଦରେ ଅଳତା ଦେବା ଲୋକ ଉପରେ ୯ କ୍ରୋଧ କରିବା ୧୦ ଉଚିତ କି ? ମାତ୍ର ୧୧ ତୁମ୍ଭର ୧୨ ଇଚ୍ଛା । ୧୪ ।

୧୩ କନ୍ଦର୍ପ ଭସ୍ମ ହୋଇଅଛି ୧୪ ଏ ଗର୍ବ ନ ଧର, କାମର ମନ୍ମଥ ପଦ ଅଛି ଏଣୁ ସେ ବଡ଼ ଉତ୍ସବ, ସେ ମନକୁ ମନ୍ଥନ କରିବାରୁ ମନ୍ମଥ ନାମ ଧରିଅଛି । ୧୫ ।

ବର (୧୧) ବଣ (୧୨) ହର (୧୩) ଅଙ୍ଗ ତପଭଙ୍ଗ ।
ତବ (୧୪) ନବବସ୍ତ୍ର ଜନ (୧୫) ଭଲ ଏ ପ୍ରସଙ୍ଗ ।୧୬।

ମଦଜଡର କର୍କଶ (୧୬) ଉରଜ (୧୭) ସଙ୍ଗମ (୧୮) ।
କରଇ କଷଣ (୧୯) ହସ (୨୦) କପଟ ଜନମ ।୧୭।

ଖଳବଣ (୨୧) ଘଣଷସ୍ତ୍ର (୨୨) ଉତ୍ତମ (୨୩) ଜନର ।
ଲବକ (୨୪) କଳପ ସମ ଅବସ୍ତ୍ର (୨୫) ନ ଧର ।୧୮।

ଏସମୟ (୧) ପରଭୃତ (୨) ରବକ ନଗର (୩) ।
ପଞ୍ଚମ ସ୍ୱରର ସଙ୍ଗ ପଞ୍ଚ-ଶର-ଶର ।୧୯।

ଧନ (୪) ଗମନ କରଇ ଭରମ ଏସନ ।
ଧରମ ରଖ, ଧରମ ରଖ ଏ ଭଜନ (୫) ।୨୦।

---

୧୩ ମହାଦେବ ୧୧ ଭସ୍ମ ୧୨ ହେଉଛନ୍ତି ତପୋଭଙ୍ଗ କର ପାର୍ବତୀଙ୍କୁ ଅର୍ଦ୍ଧାଙ୍ଗୀ କରିଅଛନ୍ତି ୧୪ ତୁମ୍ଭେ ୧୫ ନବବସ୍ତ୍ରପରି ଅଟ ତୁମ୍ଭର ଏ କପଟ ବ୍ୟବହାର ଭଲ ହେଉଛି କି ? ।୧୬।

ମଦ ଜଡର, ୧୬ କଠିଣ ୧୭ ସ୍ତନ ଏମାନଙ୍କ ୧୮ ସଂସର୍ଗରୁ ୧୯ କଷ୍ଟ ୨୦ ପ୍ରକାଶ କରୁଅଛ ଏବଂ କପଟ ଜାତ କରୁଅଛ । ୧୭ ।

୨୩ ହେ ସୀତେ ! ସଜ୍ଜନମାନେ ୨୧ ଖଳଲୋକର ଅଧୀନ ହେଲେ କମ୍ପା ସଂସର୍ଗ କଲେ ୨୨ ଅଖ୍ୟାତ ହୁଏ । ଏବଂ ୨୪ ଏକପଲକ ସୁଦ୍ଧା-କଳ୍ପ ପରି ଜଣାଯାଉଛି । ଏତେବେଳେ ୨୫ ନର୍ଦ୍ଧସ୍ତ୍ର ହୁଅ ନାହିଁ ।୧୮।

୧ ଏହି ସମୟରେ ୨ କୋକିଳ ବୃକ୍ଷରେ ବସି ୩ ରବ କଲ ତାହାର ପଞ୍ଚମସ୍ୱରରେ କାମର ପାଞ୍ଚଶର ମିଶ୍ରିତ ହୋଇଅଛି କି ? ।୧୯।

ସୀତାଙ୍କର କଣ୍ଠସହିତ କୋକିଳକଣ୍ଠର ସାମ୍ୟ ଥିବାରୁ ସେ ଧ୍ୱନି ଶୁଣି ୪ ସୀତା ଆସୁଅଛି ବୋଲି ମନରେ ଭ୍ରମ ଜାତ ହେଲା, ଏଣୁ ଧର୍ମ ରକ୍ଷା କର, ଧର୍ମ ରକ୍ଷା କର ବୋଲି ଶ୍ରୀରାମ ୫ ସ୍ତବ କରେ ।୨୦।

ପର୍ଣ୍ଣଘର (୬) ଅନ୍ତର (୭) ଚଳନ ନଗଚଳ (୮) ।
କଳକଣ୍ଠ (୯) ଗତକ୍ଷଣ (୧୦) କଥନ ଚଞ୍ଚଳ ।୨୧।
ଅଛ, ଗଛପ୍ରକାର (୧୧) ନ ଗଛ ଅନ୍ୟ ସ୍ଥଳ (୧୨) ।
ଧନ (୧୩) ଗତ ପଥ କଥନ କର ମଙ୍ଗଳ ।୨୨।
ଚମ୍ପକ, କଦମ୍ବ ରମ୍ୟ (୧୪) କରତ ପ୍ରକଟ (୧୫) ।
ଚମ୍ପକ କଦମ୍ବ, (୧୬) ରମ୍ୟ (୧୭) ରଚନ କପଟ ।୨୩।
ଚନ୍ଦ୍ର (୧୮) ଚନ୍ଦନ ତଗର କହ ତତପର (୧୯) ।
ଚନ୍ଦ୍ର (୨୦) ଚନ୍ଦନ ତଗର (୨୧) କରଇ ଅନ୍ତର (୨୨) ।୨୪।
ମଦନ (୨୩) କନକ (୨୪) ରଥ କହ କହ ସତ ।
ମଦନ କନକ (୨୬) ରଥ ଜଳ ବଣଗତ ।୨୫।
ଧବ (୫) ଅଭପ୍ସ (୬) କରକ (୭) କହ ଫଳ ଅର୍ଥ ।
ଧବ ଅଭପ୍ସ କରକ (୮) ଗମନ ଏ ପଥ ।୨୬।

---

ଶ୍ରୀରାମ ୬ ପର୍ଣ୍ଣକୁଟୀର ୭ ତ୍ୟାଗ କରି ୮ ସେହି ବୃକ୍ଷମୂଳକୁ ଯାଇ ସେଠାରୁ ୯ କୋକିଳ ୧୦ ଗଳାକ୍ଷଣି ଚଞ୍ଚଳ ହୋଇ କହିଲେ । ୨୧ ।

୧୧ ହେ ବୃକ୍ଷମାନେ ! ତୁମ୍ଭେମାନେ ୧୨ ଅନ୍ୟ ସ୍ଥାନକୁ ଯାଅ ନାହିଁ । ସର୍ବଦା ଏହିଠାରେ ଅଛ ୧୩ ସୀତାଙ୍କର ଯିବାବାଟ କହି ମଙ୍ଗଳ କର ।୨୨।

୧୪ ହେ ସୁନ୍ଦର ଚମ୍ପକ, କଦମ୍ବ । ଚମ୍ପାଫୁଲ ୧୬ ସମୂହ ତୁଲ୍ୟ ୧୭ ମନୋହାରିଣୀ ସୀତାଦେବୀଙ୍କର କପଟ ରଚନା ୧୫ ପ୍ରକାଶ କର ।୨୩।

୧୮ ହେ କାମିନୀ ଲତା ! ହେ ଚନ୍ଦନ ! ହେ ତଗର ! ୧୯ ଚଞ୍ଚଳ କହ କହେବ ହେତୁ ସୀତା ୨୦ କର୍ପୂର, ଚନ୍ଦନମାନଙ୍କୁ ୨୧ ବକ୍ଷପରି ୨୨ ଦୂର କରୁଅଛୁ କି ?

୨୩ ହେ ଧୂସ୍ତୁର ୨୪ ହେ ପୁନାଙ୍ଗ ହେ ଅମ୍ବୁବେତସ ହସ୍ତପ୍ସ କର କହ ୨୬ କନ୍ଦର୍ପର ସ୍ୱର୍ଣ୍ଣରଥ ତୁଲ୍ୟ ଅଟନ୍ତି ଏପରି ଯେଉଁ ସୀତା ସେ ଜଳ ଆଣିବାକୁ ଯାଇଅଛନ୍ତି କି ?

୫ ହେ ଧୈର୍ଯ୍ୟ, ହେ ହରିଡ଼ା, ୭ ହେ ଡାଳିମ୍ବ, ଏ ଅର୍ଥର ଫଳ କହ ସ୍ୱାମୀଙ୍କର ଅଭପ୍ସବାନକାଙ୍କ୍ଷ ସୀତା ଏ ବାଟରେ ଗଲେ କି ? ।୨୬।

କହ ଭକ୍ଷଣ ଉଦ୍ୟମ (୧୦) ସରଳ ଅସନ (୧୧) ।
ଗରଳ ସମ (୧୨) ତରଳ ସରଳ ଅଶନ (୧୩) ।୨୭।
କରଷ ସଟ(୧୪) ଧମସ୍ତ ସହଜ ପଟଳ ।
ନ କହଇ ଉଦନ୍ତ (୧୫) ସହଜ, ପର (୧୬) ବଳ (୧୭) ।୨୮।
ଏ ସମସ୍ତ ରଥପଦ (୧୮) ପତନ (୧୯) ସ୍ଥଳର ।
ନୟନ ପତନ ଅପଘନ (୨୦) ଥର ଥର ।୨୯।
ରଙ୍କ (୨୧) ଯତନ ରତନ (୨୨) ଗତ ପର (୨୩) କର (୨୪) ।
ଏଥର ମରଣ ସତ କର ଏ ସ୍ବର (୨୫) ।୩୦।
ଜଗଜ୍ଜନକ (୧) ଜରଠ (୨) ମହତ ଆଳଜ (୨)
ଅମର ମଣ୍ଡିର ରଣ, ରଣରଣ (୩) ସଜ ।୩୧।
ପଞ୍ଚମ ଶର (୩) ଏସନ ନ ପଡ଼ଇ ମନ ।
ନବ ବୟସ ଜନ ଅନ୍ତର (୬) ରଚନା ।୩୨।

---

୧୧ ହେ ସରଳ ଆସନ ! ୯ ମୁଁ ଯେଉଁପରି ଉକ୍ଷ ହେବ ତାହାର ୧୦ ଉପାୟ କହ  କୋମଳ ଏବଂ ନିର୍ମଳ ୧୩ ଆହାର ମୋତେ  ୧୨ ବିଷଭଳି ଲାଗୁଛି ।୨୭।

ହେ ପର୍ବତ, ମୋତେ ୧୪ ସବୁ ସମସ୍ତ କରଷଭଳି ଲାଗୁଛି । ତୁମ୍ଭେ ୧୬ ଶତ୍ରୁ ୧୭ ଭଳି ହୋଇ ୧୫ ବାର୍ତ୍ତା ସହଜରେ କହୁନାହଁ ।୨୮।

ଏହି ସମସ୍ତରେ ୧୮ ରଥଚକ୍ରର ଚିହ୍ନ ୧୯ ପଡ଼ିଥିବା ସ୍ଥାନରେ ଚକ୍ଷୁ ପଡ଼ିବାରୁ ୨୦ ଦେହ ଥର ଥର ହେଲା ।୨୯।

ମନରେ ବିଚାର କଲେ ୨୧ ଦରିଦ୍ର ଲୋକର ୨୨ ବହୁଯତ୍ନ ସଞ୍ଚିତ ଅମୂଲ୍ୟରତ୍ନ ୨୪ ଅନ୍ୟର ହାତକୁ ଗଲା, ଏଥର ମରଣ ନିଶ୍ଚିତ ହେଲା ବୋଲି ୨୫ ପ୍ରକାଶ କଲେ ।୩୦।

୧ ବିଧାତା ୨ ବୁଢ଼ା ବଡ଼ ନିର୍ଲ୍ଲଜ, ଯେହେତୁ ଦେବସଭା ମଧ୍ୟରେ କାମ ସହିତ ଯୁଦ୍ଧ କରିବାକୁ ପ୍ରବୃତ୍ତ ହୋଇଥିଲେ । (ବ୍ରହ୍ମା ଦେବସଭା ମଧ୍ୟରେ ଉର୍ବଶୀକୁ ହରଣ କରିବା କିମ୍ବଦନ୍ତୀ ଅଛି) ।୩୧।

ବିଧାତାର କଅଣ ମନେ ପଡ଼ୁନାହିଁ ଏ ୫ କନ୍ଦର୍ପ, ଦେବସଭା ମଧ୍ୟରେ ତାଙ୍କର ଦର୍ପ ରହିଲା ନାହିଁ । ବୋଧହୁଏ ବିସ୍ମରଣ ହେବାହେତୁ ମୋହର ନୂଆ ଯୌବନାବସ୍ଥାରେ ୬ ବିଚ୍ଛେଦ ଦଶା ଘଟାଇଲା ।୩୨।

ଶୟନ ସମସ୍ତ ଲବ ଘଣ୍ଟ ନ କରଇ ।
ଅଗ୍ରତ ସମସ୍ତର ପଲକ ନ ଚଳଇ । ୩୩ ।
ଉରଜ (୭) ଉନ (୮) ସମସ୍ତ ଅନ୍ତର ବସନ ।
ପ୍ରତ୍ୟକ୍ଷ [୯] ଅନ୍ତର (୧୦) ସହ ଏସନକ ଜନ ।୩୪।
ସଜ କମଳଜ [୧୧] ସମ ଅଙ୍ଗ ଗନ୍ଧ ବଣ ।
ଭୟ ଉଦୟ କରଇ ଭ୍ରମର ପରଶ (୧୨) ।୩୫।
ଅଞ୍ଚଳ ଚଞ୍ଚଳ କର ଉତ୍ସଙ୍ଗ ମଣ୍ଡଇ [୧୩] ।
ଯକ୍ଷ, ରକ୍ଷ ହସ୍ତଗତ ଭୟ ସମ୍ଭବଇ ।୩୬।
ପ୍ରଳୟ (୧) ଅବଲମ୍ବନ ଜନଦ (୨) ବରନ (୩) ।
ଲକ୍ଷ୍ମଣ ତକ୍ଷଣ (୪) ଦଉ (୫) ଲପନର (୬) ବନ (୭) ।୩୭।
କର୍ଣ୍ଣ ଅବରଠ (୮) ଦଉ ବଦନ ପବନ (୯) ।
ପଢନ ଅନ୍ତ (୧୦) କହଇ ସରସ ବଚନ (୧୧) ।୩୮।

---

ମୁଁ ଶୋଇବାବେଳେ କ୍ଷଣମାତ୍ର ସୀତାଙ୍କୁ ପିଠିକରି ଶୁଆଇ ନାହିଁ, ସବୁବେଳେ ତାଙ୍କ ଆଡକୁ ମୁହଁ କରି ଅପଲକ ନେତ୍ରରେ ଶୋଇଥାଏ ।୩୩।

ଆଲିଙ୍ଗନବେଳେ ବସନ ଅନ୍ତର କରି ୭ କୁଚ ଆଲିଙ୍ଗନ ଭେଦ କରାଏ ବୋଲି ତାଙ୍କୁ ନିନ୍ଦା କରେ ଏଭଳି ଲୋକ ସାକ୍ଷାତରେ ୧୦ ବିଚ୍ଛେଦ ସହିବ କପରି ? । ୩୪ ।

ସୀତାଙ୍କ ଦେହ ସଜ ୧ ପଦ୍ମଭଳି ଗନ୍ଧବିଶିଷ୍ଟ ହେବାରୁ ଭ୍ରମରମାନଙ୍କ ୧୨ ସ୍ପର୍ଶରେ ଭୟ ଜାତ କରେ । ୩୫ ।

ଏଣୁ କାନପଣନ୍ତରେ ବନ୍ଧ ହୋଇ ମୋହର ୧୩ କୋଳକୁ ଆଶ୍ରୟକରେ ଏଭଳି ଭୟଯୁକ୍ତା ଯେଉଁ ସୀତା ସେ ପୁଣି ଯକ୍ଷ, ରକ୍ଷ, କାହାର ହସ୍ତଗତ ହେଲ ଏପରି ଭୟ ସମ୍ଭବ ହେଉଅଛି ।୩୬।

୨ ମେଘପ୍ରାୟ ୩ ଉଜ୍ଜ୍ୱଳ ଅଟେ ଯେଉଁ ରାମଚନ୍ଦ୍ର, ୧ ସେ ଶୀଘ୍ର ମୂର୍ଚ୍ଛା-ଗଲେ । ଲକ୍ଷ୍ମଣ ୪ ସେହିକ୍ଷଣି ଶ୍ରୀରାମଙ୍କ ୬ ମୁଖରେ ୭ ଜଳ ୫ ଦେଲେ ।୩୭।

ଏବଂ ୮ କର୍ଣ୍ଣରନ୍ଧ୍ରରେ ୯ ମୁଖଦ୍ୱାରା ପବନ ଦାନ କଲେ ଅର୍ଥାତ୍ କାନ ଫୁଙ୍କିଲେ, ୧୦ ଚେତନା ହେଲାରୁ ୧୧ ମଧୁର କଥାମାନ କହିଲେ ।୩୮।

କର ଦମ୍ଭ ଅବଲମ୍ବନ (୧୨) ଦୂରମକ ନର (୧୩) ।
ବଚନର ପ୍ରସନ୍ନର ଜବ (୧୪) ଅପ୍ସ କର ।୩୯।
ଅଛଇତ ସଭ (୧୫) ସ୍ୱର୍ଗ, ତଳ, (୧୬) ମଞ୍ଚ (୧୭) ମଧ୍ୟ ।
ଏକଶର ବରଷଣରେ (୧୮) କରଇ ବଧ (୧୯) ।୪୦।
ଅବରଜ (୨୦) ବର (୨୧)ର ଭ୍ରମଣ ବନ ପଥ (୨୨) ।
ଦର୍ଶନ କରଇ ରକ୍ତମପ୍ସ ପଟ ରଟ (୨୩) ।୪୧।
କହଇ ପତଙ୍ଗ (୨୪) କର ଗମନ ଏ ପଥ ।
ଧନ ତନ୍ତର (୨୫) ସଙ୍ଗର କର ଅନରଥ (୨୬) ।୪୨।
ଲଙ୍କବର (୧) କର (୨) ଯନ୍ତ୍-ପତନ (୩)ର ସତ (୪) ।୪୬।
ପଙ୍କପର, (୫) ଦର (୬) ରତ୍ନପତନର (୭) ମତ ।୪୩।
ମଦଛଣ (୮) ରଥଗତ ସ୍ୱର (୯) ଧବ ରକ୍ଷ (୧୦) ।
ଦ୍ୱନ୍ଦ୍ୱବଶ (୧୧) ପଥ (୧୨) ଦୂତ (୧୩) କର ଜବ ପକ୍ଷ (୧୪) ।୪୪।

---

୧୨ କଏ ସୀତାଙ୍କୁ ନେଇଛୁ । ଆପଣ ଦମ୍ଭକୁ ୧୨ ଆଶ୍ରପ୍ସ କର । ପ୍ରୀତିପୂର୍ଣ୍ଣ କଥାରେ ୧୪ ଶୀଘ୍ର ଥପ୍ସ କରାଇଥିଲେ ।୩୯।

ସେ ସୀତାଙ୍କର ଏ ସ୍ୱର୍ଗ ୧୭ ମର୍ତ୍ତ୍ୟ ୧୬ ପାତାଳ ମଧ୍ୟରେ ୧୫ କଣ୍ଟପ୍ସ ଅଛୁ ତ, ତାକୁ ଏକବାଣ ୧୮ ବୃଷ୍ଟି କରି ୧୯ ନାଶ କରିବ । ୪୦ ।

ଶ୍ରୀରାମ ୨୦ ସାନଭାଇ ୨୧ କଥା ଅନୁସାରେ ୨୨ ଅରଣ୍ୟ ମାର୍ଗରେ ଭ୍ରମଣ କଲେ ଏହି ସମପ୍ସରେ ରକ୍ତାକ୍ତ ୨୩ ପକ୍ଷୀ ଜଟାୟୁକୁ ଦେଖିଲେ ।୪୧।

୨୪ ଜଟାୟୁ କହିଲ ହେ ରାମ, ଏହି ପଥରେ ଯାଇ ୨୫ ସୀତାଙ୍କର ସହିତରେ ୨୬ କଳହ କର ।୪୨।

୧ ରାବଣ ୨ ହାତ ୩ ଯନ୍ତ୍ର ଗୁପ୍ତ ମନ୍ଦର ହେଲା ଚକ୍ଷୁରେ ୪ କଣ୍ଟପ୍ସ ୫ କାଦୁଅ ଉପରେ ୬ ଶ୍ରେଷ୍ଠ ରତ୍ନ ପଡ଼ିଲା ପରି, ସୀତା ପତିତ ହେଲେ ।୪୩।

ସୀତା ରାବଣର ରଥରେ ଗଲାବେଳେ ୧୦ ସ୍ୱାମୀ ରକ୍ଷ ରକ୍ଷ ବୋଲି ୯ କହୁଥିଲେ ୧୨ ମୁଁ ବାଟରେ ୧୧ ଦ୍ୱନ୍ଦ୍ୱ କରିବାରୁ ରାବଣ ମୋହର ପକ୍ଷକୁ ୧୪ ଶୀ ୧୩ ଛେଦନ କଲା ।୪୪।

ଏ କଥନ ଅନ୍ତର ଘରଣ, ଗତସ୍ୱର୍ଗ ।
ଏ ଅନନ୍ତ ବହନକ ବହନର (୧୫) ଖଗ (୧୬) ।୪୫।
ଦଣ୍ଡକ ବନଅନ୍ତର (୧୭) ସହଜ ଉଭୟ (୧୮) ।
ଏକ ସର (୧୯) କରଣକ ଏ ଭ୍ରମ ଉଦୟ (୨୦) ।୪୬।
ମହ ଉଜ୍ଜ୍ୱଳ ତରଙ୍ଗ (୨୧) କତ ଚକ୍ର ସ୍ତନ ।
ପଙ୍କଜ (୨୨) ବଦନ ଝସଚଟକ (୨୩) ନୟନ ।୪୭।
ଭ୍ରମର ଅଳକ (୨୩) ପଦ୍ମ୍ପତର ଉଦର ।
ଜଳଭ୍ରମ (୨୫) ଘନ୍ତଧ (୨୬) ଅବଟ (୨୭) ରମ୍ୟତର (୨୮) ।୩।
ରକ୍ତ ଉତ୍ପଳ (୧) ରଙ୍ଗ ପଦତଳ (୨) କର (୩)
କମଳରଥ (୪) ଗମନ ଘନରସ ଭର (୫) ।୪୯।
ଚରଣ କଟକର (୬) ଶବଦ ରଣ ରଣ ।
ଲକ୍ଷ ଧବଳପକ୍ଷର (୭) ଶବଦ ଶ୍ରବଣ । ୫୦ ।

---

ଜାଟାୟୁ ଏହା କହି ସାରି ମରଣ ଲଭି ସ୍ୱର୍ଗକୁ ଗଲ । ଏଥି ଉତ୍ତାରୁ ରାମ ୧୫ ଶୀଘ୍ର ୧୬ ପକ୍ଷୀର ଶବକୁ ଦାହ କଲେ । ୪୫ ।

ଏଥଉତ୍ତାରୁ ୧୮ ରାମଲକ୍ଷ୍ମଣ ୧୭ ଦଣ୍ଡକାରଣ୍ୟ ଗ୍ଭଡ଼ି ୧୯ ଏକ ସରୋବର ଦେଖିବାରୁ ତାହାଠାରେ ସୀତା ଭ୍ରମ ୨୦ ଜାତ ହେଲ ।୪୬।

ସରୋବର ମହା ଉଜ୍ଜ୍ୱଳ ୨୧ ଲହରୀ ସୀତାଙ୍କର ବେଣୀପ୍ରାପ୍ତ ଏବଂ ଚକ୍ରବାକ ଯୁଗଳ ସ୍ତନପ୍ରାପ୍ତ, ୨୨ ପଦ୍ମ ମୁଖପ୍ରାପ୍ତ ୨୨ ମୀନ ଚଟକ ନେତ୍ରପ୍ରାପ୍ତ ହୋଇଅଛି । ୪୭ ।

ସେ ଜଳ ଶସ୍ତର ଭ୍ରମରମାନେ ସୀତାଙ୍କର ୨୪ ଚୂର୍ଣ୍ଣକୁନ୍ତଳ ପ୍ରାପ୍ତ, ପଦ୍ମପତ୍ର ଉଦର ପ୍ରାପ୍ତ, ୨୫ ଜଳ ଭଉଁର ୨୬ ଉଦର ତଳ ୨୭ ନାଭି ପ୍ରାପ୍ତ ୨୮ ଅତିଶୟ ମନୋହର ହେଇଅଛି । ୨୮ ।

୧ ରକ୍ତପଦ୍ମ ଭଳ ତାଙ୍କ ୩ ହସ୍ତ ୨ ଓ ପାଦ ତଳ ରକ୍ତବର୍ଣ୍ଣ ଓ ହଂସ ପ୍ରାପ୍ତ ଗତ ୫ ଏହାର ଘନ ଜଳର ପୂର୍ଣ୍ଣତା ନବଡ଼ ଶୃଙ୍ଗାର ରସର ପୂର୍ଣ୍ଣତା ପ୍ରାପ୍ତ ହୋଇଅଛି । ୪୯ ।

ହଂସଧ୍ୱନ ଶ୍ରବଣ କଲେ, ତାହା ସୀତାଙ୍କ ପାଦର ୬ ପାଦୁକର ରଣ ରଣ ଧ୍ୱନ ପ୍ରାପ୍ତ ଜଣାଗଲ । ୫୦ ।

ଏତ ଧନ (୮) ଏମନ (୯) ଗମନ ତତପର (୧୦) !
ସକଣ୍ଟକ (୧୧) ଅପଘନ (୧୨) ଦମଦମ ଜ୍ୱର (୧୩) । ୫୧ ।
କର ଊର୍ଦ୍ଧ୍ୱକର (୧୪) ଖର ଧରଣ (୧୫) ଉଚ୍ଛନ୍ନ (୧୬) ।
ମରକତ ବଚନ ରଚନ ଉଚସ୍ୱନ (୧୭) । ୫୨ ।
ରହସ ମତଧବ, (୧୮) ବନ୍ଧ ତପସ (୧୯) ହର ।
ରଚନ, ହସ ରଚନ (୨୦) ତର (୨୦) ସହଚର (୨୨) ।୫୩।
ରସଲସ୍ପ, ନ ଧ୍ୱଂସ (୨୩) ସଖ ନୟନଶର ।
ରଭସ (୨୪)ର ନଦମ [୨୫] ମଦନ ରସ, ଭର [୨୬] ।୫୪।
ରତ ରସର (୧) ଧନ (୨) ନ ଧରଷ, ରଚର (୩) ।
ରଖ ବରଦ (୪) ଭଲ (୫) ଲଭ ଦରବ (୬) ଖର ।୫୫।
ରଞ୍ଜ ପଣର, ସତତ (୭) ଶରଣପଞ୍ଜର ।
ରମ୍ୟ (୯) ରହ ଏ ସ୍ଥଳ ରତ ଏ ଦରଷତା ।୫୬।

---

ସେହି ସରୋବରକୁ ଦେଖି ୮ ଏ ତ ସୀତା ୯ ଏହା ମନେ କରି ସେ ସ୍ଥାନକୁ ୧୦ ତର ତର ହୋଇ ଗମନ କଲେ ୧୨ ଶରୀର ୧୧ ରୋମାଞ୍ଚ ହେଲା ଓ ୧୩ ଗ୍ରୀଷ୍ମ ବମ ବମ ହେଲା ।୫୧।

୧୫ ଶୀଘ୍ର କରିବାକୁ ୧୬ ଉଦ୍‌ବେଗ ହୋଇ ୧ ହସ୍ତ ଊର୍ଦ୍ଧ୍ୱକୁ ଟେକିଲେ ମର୍କତ ବର୍ଣ୍ଣ ରାମ ସୀତା ସୀତା କହି ୧୭ ଉଚସ୍ୱରରେ ଡାକ ପକାଇଲେ ।୫୨।

ଏବଂ କହିଲେ ରହସ୍ୟଯୁକ୍ତ ହୋଇ ୧୮ ସ୍ୱାମୀ ନାଶ ବିଷୟରେ ୧୯ ଅହଙ୍କାରଯୁକ୍ତ ହେବା ପରିତ୍ୟାଗ କର ।୨୦। ହାସରହ ପ୍ରକାଶ କରି ୨୨ ଏ ଦାସକୁ ୨୧ ଉଦ୍ଧାର କର । ୫୩ ।

ରସର ଲସ୍ପକୁ ଧ୍ୱଂସ କର ନାହିଁ, ନୟନ-ଶର ସଖ, (୨୬) ପୂର୍ଣ୍ଣକାମ ରସକୁ ୨୪ ଚଞ୍ଚଳ ୨୫ ବିନାଶ କର ନାହିଁ । ୫୪ ।

୧ ହେ ସୀତେ ! ଏ ୨ ଆଦରସରେ ରତ ହୁଅ, ୩ ତାକୁ ଦମନ ନ କରି ଶୀଘ୍ର ୬ ଦ୍ରବୀଭୂତ ହୋଇ ୪ ବରଦାନ କରି, ମୋତେ ରକ୍ଷାକର ଓ ୫ ପ୍ରଶଂସା ଲାଭ କର ।୫୫।

ଏହି ମନୋହର ୮ ରହସ୍ୟ ସ୍ଥାନରେ ହର୍ଷ ଜାତ କରି ୭ ଅନବରତ ଶରଣପଞ୍ଜର ପଣରେ ରଞ୍ଜିତ ହୁଅ ।୫୬।

ରସତ ଏ ତବ ଜନମ ସମସ୍ତ ।
ନଷ୍ଟ ହରଷ ପରମ କଷ୍ଟ ସଉଦସ୍ତ (୯) ।୫୭।

ଦର୍ପକର (୧୦) ଶର ବଶ ଚକ୍ର ଦର କର (୧୧) ।
ଦର୍ପକର (୧୨) ସର (୧୩) ଭସ ଚକ୍ରୀଦର କର (୧୩) । ୫୮ ।

ଦନ୍ଦ୍ୱ (୧) ଗତ କବନ୍ଧ (୨) ଧରଣ (୩) ସ୍ପନ୍ଦନ (୪) ।
ଦନ୍ଦ୍ୱଗତ (୫) କବନ୍ଧ (୬) ଧରଣ (୭) ସ୍ପନ୍ଦନ । ୫୯ ।

ପରମ ହରଷଦ ।୯। ଉପେନ୍ଦ୍ର ଭଞ୍ଜର ।
ଅଠର ଲକ୍ଷଣ ବଦ୍ଧ (୧୦) ବନଜ ପଦ୍ମର (୧୧) ।୬୦।

---

ତୁମ୍ଭେ ନିଶ୍ଚୟ ଆଦ୍ୟରସର ଜନ୍ମକାଳରେ ହର୍ଷନାଶ କରୁଅଛ ୯ବଂ ପରମ କ୍ଳେଶକୁ ୯ ଜନ୍ମାଉଅଛ ଅତଏବ ତୁମ୍ଭେ ସେ ଭଳ କର ନାହିଁ । ୫୭ ।

୧୧ ଶ୍ରୀରାମ ୧୦ କନ୍ଦର୍ପ ଶରର ବଶ ହୋଇ ୧୨ ଗର୍ବଯୁକ୍ତ ହେଲେ ୧୩ ପୋଖରୀରେ ବସିଥିବା ଚକ୍ରବାକକୁ ଭୟ ଦେଖାଇଲେ କିମ୍ବା ପରାକ୍ରମୀ ରାମଚନ୍ଦ୍ର କାଣ୍ଡହାରୀ କାମରେ ବଶ ଚକ୍ରବାକକୁ ଭୟ ଦେଖାଇଲେ ବା ଶାପ ପ୍ରଦାନ କଲେ । ୫୮ ।

ରାମ ଲକ୍ଷ୍ମଣ ୧ ଦୁଇଜଣ ସେ ସ୍ଥାନରୁ ଯାଉଁ ଯାଉଁ ବାଟରେ ୨ ମସ୍ତକଶୂନ୍ୟ ହୋଇଥିବା ୬ କବନ୍ଧ ନାମକ ଅସୁର ଆସି ଏ ଦୁହିଙ୍କର ୪ ଅଙ୍ଗକୁ ୩ ଧରିଲା, ସେ ୫ କନ୍ଦର୍ପବଶ ହୋଇ ଯେଉଁ ୭ ହସ୍ତରେ ଧରିଥିଲା ସେହି ହସ୍ତକୁ ରାମ ଛେଦନ କଲେ । ୫୯ ।

ଶ୍ରୀରାମଚନ୍ଦ୍ରଙ୍କର ୧୦ ଅଷ୍ଟାଦଶ ଚିହ୍ନଯୁକ୍ତ ୧୧ ପାଦପଦ୍ମ ଉପେନ୍ଦ୍ର ଭଞ୍ଜଙ୍କର ୯ ଉତ୍କୃଷ୍ଟ ହରଷକୁ ଜାତ କରାଏ । ୬୦ ।

---

## ତୃତୀୟ ଛାନ୍ଦ

[ରାଗ—ମଙ୍ଗଳଗୁର୍ଜ୍ଜରୀ]

ଅଜନନ୍ଦନ (୧) ନନ୍ଦନ (୨) ଭ୍ରମଣବନ ।
ଏମନ୍ତ ଭକତ ବଶ ଘନ (୩) ବରନ ।୧।

ପଯ୍ଯ (୪) ଦତ୍ତ କରକ (୫) ତନୟ (୬) ତରସ (୭) ।
ତତପର ଏ ବରଦ (୮) ମହ (୯) ହରଷ ।୨।

ଶକର (୧୦) ରଦନ (୧୧) ପଦ (୧୨) ରଞ୍ଜନ (୧୩) ଫଳ ।
ଦତ୍ତକ୍ଷଣ ଭକ୍ଷଣ ଜଗତ ମଙ୍ଗଳ (୧୪) ।୩।

ଦଇବ ବଳ (୧୫) ପବନ (୧୬) ନନ୍ଦନ (୧୭) ସଙ୍ଗ ।
ପରସ୍ପର କଥନ ସକଳ ପ୍ରସଙ୍ଗ (୧୮) ।୪।

---

## ତୃତୀୟ ଛାନ୍ଦର ଅର୍ଥ

୧ ଦଶରଥଙ୍କ ୨ ପୁତ୍ର ରାମ ଲକ୍ଷ୍ମଣ ବନସ୍ତରେ ଭ୍ରମଣ କଲେ, ୩ ରାମ ଏପରି ଭକ୍ତାଧୀନ ହୋଇଥିଲେ ଯେ । ୧ ।

୫ ଗୋପାଳ ୬ ପୁତ୍ରମାନେ ୭ ତତ୍ପରେ ରାମ ଲକ୍ଷ୍ମଣଙ୍କୁ ୪ ଦୁଗ୍ଧ ଦାନ କରିବାରୁ ସେହି ଗୋପାଳ ପୁତ୍ରମାନଙ୍କୁ ପରଜନ୍ମରେ ଗୋପାଳ ପୁତ୍ର ହେବାଲାଗି ୮ ବର ପ୍ରଦାନ କଲେ, ଗୋପାଳ ପୁତ୍ରମାନେ ଏହା ଶୁଣି ୯ ଅତ୍ୟନ୍ତ ଆନନ୍ଦିତ ହେଲେ । ୨ ।

୧୦ ଜଗତର ୧୧ ଦନ୍ତ ୧୨ ଚରଣରେ ୧୩ ମନୋହର ହୋଇଥିବା ଫଳ ସବୁ ରାମ ଓ ଲକ୍ଷ୍ମଣଙ୍କୁ ଦେବାମାନେ ଦେଲେ ଦୁହେଁ ସେ ଫଳ ସବୁ ଭକ୍ଷଣ କଲେ । ୩ ।

୧୫ ଦୈବ ଯୋଗରୁ ୧୬ ବାୟୁ ୧୭ ପୁତ୍ର ହନୂମାନ ତାହାଙ୍କର ସଙ୍ଗୀ ହେଲାରୁ ଆପଣା ଆପଣା ମଧ୍ୟରେ ସବୁ ୧୮ ବିଷୟ କଥାବାର୍ତ୍ତା ହେଲେ । ।୪।

ଦଉଣନର ସପଡନ୍ତସ୍ମ (୧୯) ତନସ୍ମ ।
ବଉ୍ ବଚନ ବନ୍ଧନ ମଣ୍ଡନଚସ୍ମ (୨୦) ।୫।
ଚପଳ (୨୧) କଥନ ଧନ (୨୨) ଗଡ ଅସ୍ଵନ (୨୩)
ଜବ (୨୪) ଜଳସଦୃ (୨୫) ପଦ୍ମ ପଞ୍ଚ ନସ୍ଵନ ।୬।
ଏକ ଏକ ମଣ୍ଡନ (୧) ଦର୍ଶନ କରଣ ।
ଜଚ୍ଛନ୍ନ (୨) ମନର ତତକ୍ଷଣ ମରଣ ।୭।
ମନମଥ (୨) ମଥନ ଅସନ କଥନ ।
ଶ୍ରବଣ କର ଉଚନ ସତ୍ୟ ବଚନ ।୮।
* ଏ ସମସ୍ତର ଅନ୍ତର ପଥର ସଚ ।
* ଝୁଣ୍ଟକ ଧନ ଅଙ୍ଗର ଅନବରତ (୪) ।୯।
ଏ ଛଳ (୫) ବଚଳ (୬) ରଚଇତ ଭରମ (୭) ।
ଏମନ୍ତ ମମ (୮) ତବର (୯) ଏକ କରମ ।୧୦।

---

୧୯ ସୂର୍ଯ୍ୟଙ୍କର ପୁତ୍ର ସୁଗ୍ରୀବ ଏମାନଙ୍କୁ ଦେଖିବା ମାତ୍ରେ ଲୁଗାରେ ବନ୍ଧ ହୋଇଥିବା ସୀତାଙ୍କର ୨୦ ଅଳଙ୍କାର ସବୁକୁ ଶ୍ରୀରାମଙ୍କୁ ପ୍ରଦାନ କଲେ । ୫ ।

ଏବଂ ୨୧ ଚଞ୍ଚଳ ୨୨ ସୀତାଙ୍କର ୨୩ ଯିବା ପଥ ଦେଖାଇ ଦେଲେ, ଶ୍ରୀରାମଙ୍କର ପଦ୍ମନେତ୍ର ୨୪ ଶୀଘ୍ର ୨୫ ଲୋତକପୂର୍ଣ୍ଣ ହେଲା ।୬।

ଗୋଟିଏ ଗୋଟିଏ ୧ ଅଳଙ୍କାରକୁ ଦେଖି ରାମଙ୍କର ମନ ଏପରି ୨ ଚଞ୍ଚଳ ହେଲା ଯେ, ସତେ ଯେପରି ସେହିକ୍ଷଣି ଜୀବନ ବାହାରି ଯିବ ।୭।

ଅସହ୍ୟ ୩ କନ୍ଦର୍ପ ମଥନ କଲା, କହିଲେ ହେ ଉତ୍ନ ଧତ୍ୟକଥା ଶ୍ରବଣ କର । ୮ ।

ହେ ଅଳଙ୍କାର ! ସୀତାଙ୍କ ଅଙ୍ଗରେ ୪ ସର୍ବଦା ଝୁଣ୍ଟୁଥିଲ ତାଙ୍କଠାରୁ ପୃଥକ ହେବାରୁ ପଥର ପାଲଟି ଯାଇଛ । ୯ ।

ତୁମ୍ଭେମାନେ ସୀତାଙ୍କ ବିଷୟରେ ପଥର ପରି ହେଉଛ, ଏ ଯେଉଁ ୫ ଛଳନା ୬ କଥା ଏହା ୭ ଭ୍ରମରେ ପଣ୍ଡିତ ଲୋକ ରଚନା କରେ କେବଳ ସେ କଥା ଏପରି ଯେ ୮ ତୁମ୍ଭର ୯ ଆମ୍ଭର କର୍ମ ଏକପ୍ରକାର ଅଟେ ।୧୦।

ମଣ୍ଡନର ମଣ୍ଡଳ (୧୦) ଛଇଳ ରଚନ (୧୧) ।
ତଦଅନ୍ତର (୧୨) ତବର (୧୩) ହୃଦରଞ୍ଜନ (୧୪) ।୧୧।
ଧନ୍ୟ ଧନ୍ୟ ମନ ମମ ମଙ୍ଗଳକର ।
ସବ ଅନ୍ତର (୧୫) ରଖଇ ଅଙ୍ଗଦ କର (୧୬) ।୧୨।
ଏ ଅନନ୍ତର ଅମ୍ବର (୧) ଓଢ଼କ (୨) ଅଙ୍ଗ ।
ତତପର ବଦନର ଏ ସ୍ତବ (୩) ସଙ୍ଗ ।୧୩।
ଧନ ସକଳ ଅଙ୍ଗର ଜଡ଼ (୪) ବସନ ।
ସହ ଅନଳ, ପଥର, ଜଳ, ପତନ ।୧୪।
ସ୍ମର (୫) ଶର କମଳ (୬) ସକଳ ଏମନ୍ତ ।
ମମ କବଚ (୭) କରଣ ଅର୍ଥ (୮) ତ୍ୟଜତ ।୧୫।
ତବ ତପ ଫଳ କ୍ଷୟ, ନ ଧର ମନ ।
ରହଇ ଅଙ୍ଗର ତବ ସଙ୍ଗ, ବସନ ।୧୬।

---

୧୧ ସୀତା ୧୦ ଅଳଙ୍କାର ସମୂହର ଅଳଙ୍କାର ଅଟନ୍ତି ୧୨ ତାଙ୍କଠାରୁ ତୁମ୍ଭେମାନେ ଅନ୍ତର ହେବରୁ ୧୩ ତୁମ୍ଭମାନଙ୍କର ୧୪ ମନୋରଞ୍ଜନ ଶକ୍ତି ଊଣା ହୋଇଯାଇଛି । ୧୧ ।

ସୀତାଙ୍କର ହୃଦୟ ଧନ୍ୟ ଏବଂ ତାହା ମୋର ମଙ୍ଗଳକର ଅଟଇ, ସବୁ ଅଳଙ୍କାର ୧୫ ଛାଡ଼ିଦେଇ ୧୬ ହସ୍ତର ଭୂଷଣ ରଖିଅଛନ୍ତି ।୧୨।

ଏହା ଉତ୍ତାରୁ ସୀତା ତ୍ୟାଗ କରିଥିବା ୧ ଅମ୍ଳାନ ବସନକୁ ରାମ ୨ ନିଜର ଶରୀରରେ ଆବୃତ କଲେ, ତା ପରେ ୩ ଏହି ପ୍ରଶଂସା କରି କହିଲେ ।୧୩।

ହେ ଅମ୍ଳାନ ବସ୍ତ୍ର ! ତୁମ୍ଭେ ସୀତାଙ୍କର ସର୍ବାଙ୍ଗରେ (୪) ଜଡ଼ିତ ହୋଇ ରହୁଥାଅ ଏବଂ ଅଗ୍ନି, ପ୍ରସ୍ତର, ବର୍ଷା ଓ ଜଳ ଏମାନଙ୍କର ପତନ ସହ୍ୟ କର । ୧୪ ।

କନ୍ଦର୍ପର ୬ କମଳାଦ ଶରସମୂହରୁ ରକ୍ଷା ପାଇବା ନିମିତ୍ତ ମୋର ୭ ସାଞ୍ଜୁ ସକାଶେ ଏହି ଅମ୍ଳାନବସ୍ତ୍ର ତ୍ୟାଗ କରିଛୁ କି ?। ୧୫ ।

ହେ ବସନ ! ତୁମ୍ଭର ସୀତାଙ୍କ ଅଙ୍ଗସଙ୍ଗ ରହିଲା ବୋଲି ମନେ ନ ଧର, ତୁମ୍ଭର ତପସ୍ୟା କ୍ଷୟ ହେବ । ୧୬ ।

ଅନନ୍ତ (୮) ପ୍ରସନ୍ନ ଜନ କଷ୍ଟହର (୯) ।
ମଇତ୍ର କରଣ ତପନ ତନୟ ।୧୭।
ନଖ ରଜ (୧୦) ରକ୍ଷ (୧୧) ଶବ ପ୍ରଦତ୍ତ ଅଗ୍ର ।
ଗଗନ (୧୨) ଗତ କରକ ସ୍ୱବଳ ଉଗ୍ର (୧୩) ।୧୮।
ସପତ (୧) ଗଛ କର୍ତ୍ତନ ଏକ ଶରର ।
ପ୍ରଣତ (୨) ଚଣ୍ଡ-କର-ଜ (୩) ପଦ୍ମ ପଯୁର । ୧୯ ।
ପରବର୍ତ୍ତିକ (୪) ସହଜ ହସ୍ତର ରଣ ।
ପ୍ରକଟ (୫) କର ମର୍କଟବର (୬) ମରଣ । ୨୦ ।
ସକଳ ସମ୍ପଦ ତଞ୍ଜକର ସଖର ସଖର (୭)
କନ୍ୟା କଣ୍ଠ କର ଅବରଜ (୮) ସଙ୍ଗର । ୨୧ ।
ପ୍ରସ୍ରବଣଧର (୯) ପର (୧୦) ଜବ (୧୧) ଗମନ ।
ତବ ରଞ୍ଜନ (୧୨) ରଞ୍ଜଇ ସମସ୍ତ ମନ ।୨୨।

---

୮ ଏହା ପରେ ୯ ଜନଦୁଃଖ-ହର୍ତ୍ତା ଶ୍ରୀରାମ ପ୍ରସନ୍ନ ହୋଇ ସୁଗ୍ରୀବ ସଙ୍ଗେ ମିତ୍ରତା ସ୍ଥାପନ କଲେ । ୧୭ ।

ରାମଚନ୍ଦ୍ର ଙ୍କର ୧୩ ପ୍ରଚଣ୍ଡ ବଳରେ ୧୧ ରାକ୍ଷସ [ଦୁନ୍ଦୁଭି]ର ଶବକୁ ନଖାଗ୍ରରେ ୧୦ ଧୂଳିକଣା ଭଳି ୧୨ ଆକାଶକୁ ଫିଙ୍ଗି ଦେଇଥିଲେ । ୧୮ ।

ଏବଂ ଗୋଟିଏ ଶରେ ଛନ୍ଦ ୧ ସପ୍ତଶାଳ ବୃକ୍ଷକୁ କାଟି ପକାଇଲେ ଏହା ଦେଖି ୩ ସୁଗ୍ରୀବ ଶ୍ରୀରାମଙ୍କ ପଦ୍ମ ପାଦରେ ୨ ପ୍ରଣିପାତ ହେଲେ । ୧୯ ।

ଶ୍ରୀରାମ ଭାଇ (ବାଳି ଓ ସୁଗ୍ରୀବ] ଦୁହିଁଙ୍କ ମଧ୍ୟରେ ସମର ୪ କରାଇ ୬ ବାଳିର ମୃତ୍ୟୁ ୫ ଘଟାଇଲେ । ୨୦ ।

ବାଳିର ମୃତ୍ୟୁ ହେବାରୁ ଶ୍ରୀରାମ ବାଳିର ସବୁ ସମ୍ପଦକୁ ଙ୍କର ୭ ମିତ୍ର ସୁଗ୍ରୀବକୁ ଦାନ କଲେ । ଏହା ପରେ ୮ ସାନଭାଇ ଲକ୍ଷ୍ମଣଙ୍କ ସଙ୍ଗରେ କନ୍ୟା ମାସରେ ଆସିବାକୁ ସ୍ଥିର କଲେ । ୨୧ ।

୯ ମାଲ୍ୟବନ୍ତ ୧୦ ଶ୍ରେଷ୍ଠ ପର୍ବତକୁ ୧୧ ଚଞ୍ଚଳ ଗମନ କଲେ ସେ ପର୍ବତକୁ ଦେଖି କହିଲେ ୧୨ ତୁମ୍ଭର ଯେଉଁ ମନୋହାରିତ୍ୱ ଗୁଣ ସେ ସମସ୍ତଙ୍କ ମନ ମୋହିତ କରୁଅଛି । ୨୨ ।

ଲଭଇ ମହତ ମତ୍ତଇଭର [୧୩] ସମ ।
ଅନନ୍ତ (୧୪) ଜ୍ୱଳିତ (୧୫) ଦନ୍ତ (୧୬) କଣ୍ଟକ (ରମ୍ୟ) (୧୮)

ସମର (୧୯) ସମ ଖଡ୍ଗ (୨୦) ଭଲ୍ଲ (୨୧) ଉଜ୍ଜ୍ୱଳ [୨୨] ।
ଚକ୍ର ଶର (୨୩) ଗମନ ବଡ଼ଚପଳ [୨୪] । ୨୪ ।

ଅମର ନଗର [୧] ବର ଗନ୍ଧର୍ବ ଘନ (୨)
ଅର୍ଣ୍ଣବ (୩) ଲକ୍ଷ୍ମଣ ଚକ୍ରଧର [୪] ଶୟନ । ୨୫ ।

ଘନ (୫) ଲକ୍ଷ୍ୟ ସମ୍ବର [୬] ଧରଇ ଉଦର ।
ସକଳ ଚନ୍ଦ୍ର [୭] ମଣ୍ଡନ ସତ ଈଶ୍ୱର ।୨୬।

---

ଏ ପର୍ବତ ୧୩ ଶ୍ରେଷ୍ଠ ହସ୍ତୀ ସମାନ ଅଟେ; ହସ୍ତୀର ୧୪ ଅସୀମ ୧୫ ବର୍ଦ୍ଧିତ ୧୬ ଦାନ୍ତ ୧୭ ମଣ୍ଡଳ ୧୮ ରମ୍ୟ ହେଲଭଳି ଏ ପର୍ବତ ଅତିଶୟ ଉଚ ହୋଇ ଶୃଙ୍ଗ-ନିତମ୍ବଦ୍ୱାରା ରଞ୍ଜିତ ହୋଇଅଛି । ୨୩ ।

ଏ ପର୍ବତ ୧୯ ଯୁଦ୍ଧ ଭଳି ଅଟେ, ଯୁଦ୍ଧ ୨୦ ଖଣ୍ଡା ୨୧ ଭାଲରେ ୨୨ ଉଜ୍ଜ୍ୱଳ ଏବଂ ସେଠାରେ ଚକ୍ର ୨୩ ଶର ୨୪ ଚଞ୍ଚଳ ଗମନ କରେ । ସେଭଳି ଏ ପର୍ବତରେ ଚଙ୍ଗା ଏବଂ ଭଲ୍ଲୁକମାନେ ଦେଖାପ୍ତ ହୋଇ ଅଛନ୍ତି । ଚକ୍ରବାକ ପକ୍ଷୀ ଅତି ଶୀଘ୍ର ଗାମୀ ହେଉଅଛି । ୨୪ ।

ସେ ପର୍ବତ ୧ ସ୍ୱର୍ଗଭଳି ହୋଇଅଛି, ସେଠାରେ ଗନ୍ଧର୍ବମାନେ ଥାନ୍ତି ଏଠାରେ ୧ କୋକିଳ ସାନ୍ଦ୍ର ହୋଇଅଛନ୍ତି, ସେ ପର୍ବତ ୩ ସାଗର ତୁଲ୍ୟ ଅଟେ, ସେଠାରେ ଭଗବାନ ଶୟନ କରିଅଛନ୍ତି । ଏଠାରେ ୪ ସର୍ପମାନେ ଶୟନ କରିଅଛନ୍ତି । ୨୫ ।

ଏ ପର୍ବତ ୫ ମେଘ ପରି ହୋଇଅଛି, ମେଘର ଉଦରରେ ୬ ଜଳଅଛି, ଏ ପର୍ବତ ଉଦରରେ ୬ ମୃଗ ଅଛନ୍ତି । ଏ ପର୍ବତ ଈଶ୍ୱର ଭଳି ହୋଇଅଛି । ଈଶ୍ୱର ଅର୍ଦ୍ଧଚନ୍ଦ୍ର, ଭୂଷିତ, ଏ ପର୍ବତ ୭ ଚନ୍ଦନ ବୃକ୍ଷ; କାମଲ୍ୟ ଲତା ଏବଂ ସୁବର୍ଣ୍ଣ ଜଳରେ ଭୂଷିତ । ୨୬।

# କାବ୍ୟସମ୍ବାଦ

"ସେଇ ସ୍ଥଳେ ପ୍ରତିଯୁଗ ଆନେନା ଆପନା ଅବସାନ
ସମ୍ପୂର୍ଣ୍ଣ କରେନା ତାର ଗାନ
ଅତୃପ୍ତିର ଦୀର୍ଘଶ୍ୱାସ ରେଖେଯାୟ ସାଥେ ସେ ବତାସେ
ତାଇ ଯେଥେ ପରଯୁଗ ବାଶୀର ଉଚ୍ଛ୍ୱାସେ
ବେଜେ ଓଠେ ଗାନା ଖାନ
ତା' ର ମାଝେ ସୁଦୂରେର ବାଣୀ
କୋଥାଏ ଲୁକାୟେ ଥାକେ' କ ବଲେ ସେ
ବୁଝିତେ କେ ପାରେ।"

—ରବୀନ୍ଦ୍ରନାଥ

ନିରବଧି କାଳର ପ୍ରଚଣ୍ଡ ଗତିସ୍ରୋତରେ ସୃଷ୍ଟି ଅବସାନ ସମ୍ଭବ ହେବାର ନୁହେଁ। କୌଣସି ଯୁଗବିଶେଷର ସାଧନା ପରିପୂର୍ଣ୍ଣତାର ଗୌରବରେ ଧ୍ୱଂସମୁଖର ନଦୀ-ସ୍ରୋତପରି ପ୍ରବାହିତାରେ ଶେଷ ହୋଇଯାଏ ନାହିଁ କି କାଳପ୍ରବାହରେ ନୂତନ ଯୁଗର ଶୁଭାଶୀର୍ବାଦ ମହାଶୂନ୍ୟରୁ ପତନ ଅସେ ନାହିଁ। ପ୍ରତ୍ୟେକ ଯୁଗର ସାଧନାର ଅପୂର୍ଣ୍ଣତା ପରବର୍ତ୍ତୀ ଯୁଗର ସାଧନାକୁ ଅପେକ୍ଷା କରେ। ସାଧନାର ଲଲାଟରେ କାହିଁ ପରିପୂର୍ଣ୍ଣ ସନ୍ତୋଷର ଲିପି ଦେଖାଯାଏ ନାହିଁ। ତେଣୁ ତାର ଅତୃପ୍ତିର ଯେଉଁ ଦୀର୍ଘଶ୍ୱାସ ବାୟୁମଣ୍ଡଳରେ ଘୂରି ବୁଲୁଥାଏ, ତାହା ହିଁ ପରବର୍ତ୍ତୀ ଯୁଗରେ ସାଧନାର ବଂଶୀରନ୍ଧ୍ରରୁ ନୂତନ ସଙ୍ଗୀତ ସୃଷ୍ଟି କରେ। ସେ ସଙ୍ଗୀତ ନିଶ୍ଚିତଭାବରେ ନୂତନ କାଳର—ଅଥଚ ଅତୀତର ପ୍ରାଣସ୍ପନ୍ଦନକୁ ଯେଠାରେ ଅସ୍ୱୀକାର କରିହେବ ନାହିଁ। କାଳର ସମଗ୍ରତା ମଧ୍ୟରେ ହିଁ ମାନବ ସାଧନାର ଅଖଣ୍ଡତା ଚିରକାଳ ଅକ୍ଷୁଣ୍ଣ ଓ ଅବ୍ୟାହତ ରହେ।

ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଯେଉଁ ଅଖଣ୍ଡ ମାନବସାଧନାର କଳା ସୂତ୍ରସେତୁ ପରି ସଂଯୁକ୍ତ କରି ରହିଛି, ତାହା ମହତ ପ୍ରତିଭାର ଏକାତ୍ମ ବୋଧରେ ହିଁ ନୂତନ ସୃଷ୍ଟିର ସମ୍ଭାବନା ଜାଗେ। ହେଲା ବହୁଳ ସାଧନା ସହିତ ଯେଉଁ ଲେଖକଙ୍କ ସଂସ୍ରବ ନାହିଁ, ସେ କେବଳ ପ୍ରାତ୍ୟହିକ ଜୀବନର ତୁଚ୍ଛତା ମଧ୍ୟରେ ନିଶ୍ଚିହ୍ନ ହୋଇ-ଯାନ୍ତି। ଆତ୍ମକେନ୍ଦ୍ରିକ ଲୌକିକତାର ନିଦାରୁଣ ଦୈନ୍ୟ ଭିତରେ ପ୍ରତିଭାକୁ ଖୋଜି

ଏମନ୍ତ ଅଚଳ ପର ଛନ୍ଦନ ସଦନ ।
ରଚନ ବର୍ଣ୍ଣନ ଦଶରଥ ନନ୍ଦନ ।୨୭।
ଭରତ ଅଗ୍ରଜ (୮) ଜଳଜ (୯) ପଦ୍ମର (୧୦) ।
ସମସ୍ତ ସମ୍ପଦ ଉପେନ୍ଦ୍ର ଭଞ୍ଜର ।୨୮।

———

## ଚତୁର୍ଥ ଛାନ୍ଦ

ପ୍ରକଟ (୧) ଘନ (୨) ସମସ୍ତ, ଘନ ପଟଳ (୩) ଉଦସ୍ତ (୪)
ଧନ୍ୟ ରସଜନ୍ୟ ସ୍ଥଳ, ଦରଶନର
ରତ ଷଣ୍ଡ (୫) ମଉଭର, ନଟନ (୬) ଅଚଳପର, (୭)
ତପ ଅନ୍ତକ (୮) ଅନଙ୍ଗ ମଙ୍ଗଳକର (୯)
ଏ ତର ସମ୍ଭବ ସନ୍ଧ, [୧୦]
ନଗଧବ (୧୧) ଚଳଚ୍ୟକ୍ତ ଗମନ ଉର୍ଦ୍ଧ୍ୱ ।୧।

---

ଏମନ୍ତ ଯେଉଁ ପର୍ବତ ତାହା ଉପରେ ପଦ କୁଡ଼ିଆ ରଚନା କରି ଶ୍ରୀମ ଲକ୍ଷ୍ମଣ ଦୁହେଁ କାଳଯାପନ କଲେ । ୨୭ ।

ଭରତଙ୍କର ୮ ବଡ଼ଭାଇ ଶ୍ରୀରାମଚନ୍ଦ୍ରଙ୍କର ୯ ପଦ୍ମ ୧୦ ପାଦେ ଉପେନ୍ଦ୍ର ଭଞ୍ଜଙ୍କର ସମସ୍ତ ସମ୍ପତ୍ତି ଅଟଇ । ୨୮ ।

—✱—

## ଚତୁର୍ଥ ଛାନ୍ଦର ଅର୍ଥ

୨ ବର୍ଷାସମସ୍ତ ୧ ପ୍ରକାଶିବାରୁ ୩ ମେଘମାନ ୪ ଦେଖା ଦେଲେ, ତାହା ରସ ଜନ୍ମସ୍ଥାନ ହେବାରୁ ପ୍ରଶଂସମାପ୍ତ ହେଲା, ଏହା ସମସ୍ତଙ୍କୁ ଦେଖି ୫ ନପୁଂସକ ଜନନ ଅର୍ଥାତ୍ ମୟୂରମାନେ ରସରେ ମାତ୍ତ ଉନ୍ମତ୍ତଭାବରେ ୭ ପର୍ବତ ଉପରେ ୬ ନୃତ୍ୟ କଲେ । ସେ କାଳ ଗ୍ରୀଷ୍ମକୁ ନାଶ କରି ୯ କନ୍ଦର୍ପର ମଙ୍ଗଳଦାୟକ ହେଲା । ଋଷିମାନଙ୍କ ମନରେ ଏପରି ଭୟ ଜାତ ହେଲା କି, ଏ ବର୍ଷାକାଳ ତପସ୍ୟାର ଅନ୍ତକ ଓ କନ୍ଦର୍ପର ମଙ୍ଗଳଦାୟକ ହେବ, ଏହା ହେତୁରୁ ୧୧ ପର୍ବତରାଜ ହିମାଳୟର ତଳ ପ୍ରଦେଶ ତାହାର ୧ ପ୍ରାସାଦ ଉପରକୁ ଗମନ କଲେ । ୧ ।

କର୍ଣ୍ଣ ଗତ ଘଟ (୧) ଘଟ, (୨) ଶରଭ (୩) ଗର୍ବ ପ୍ରକଟ
ବନ୍ତ ଉଟ ମଟ (୪) କର ଊର୍ଦ୍ଧ୍ୱ ନୟନ,
ପଥ ଗତ ଜନଙ୍କର, (୫) ପ୍ରଭବ (୬) ଏମନ୍ତ ବର, (୭)
ତର ସରସ (୮) ଉଲ୍ଲକବର (୯) ଏ ଘନ ।
ଏଣ (୧୦) ଶଶ (୧୧) ହୟ (୧୨) ଦର୍ଶନ,
କବଳ କରଇ ଧର (୧୩) ଚନ୍ଦ୍ର (୧୪) ତପନ (୧୫) ।୨।

ଜଗତ ତମ ସମସ୍ତ, (୧) ନଭ (୨) ଦରଶନ ଷସ୍ତ, (୩)
ଦରଶମତ (୪) ସକଳ ଦଣ୍ଡ ସଜନ, (୫)
ଅହ ହତ [୬] ମହଭସ୍ତ (୭) ଉଦସ୍ତ ଚକ୍ର ଉଭସ୍ତ, (୮)
ମହତ ରକ୍ଷକ ସତ ବନଜ ବନ (୯),
ତସ୍କର ପ୍ରକର (୧୦) ହରଷ,
ଉପଧବ (୧୧) ପରସଦ୍ମ (୧୨) ଗତ ରଭସ । ୩ ।

---

ସିଂହରଡ଼ ଢକ୍କର ୧ ଘଟ ଘଟ ୨ ଶର ତାହାର କର୍ଣ୍ଣକୁ ଯିବାରୁ ୩ ଅଷ୍ଟପଦ ଦର୍ପ ପ୍ରକାଶ କରି ୪ ବାନ୍ତ ଉଟଙ୍କ ଉପରକୁ ଚହିଁଲ ୫ ପଥିକମାନଙ୍କର ୬ ଭୟ ଜନ୍ମାଉଥିବାରୁ ୭ ଅତିଶୟ ୮ ଜଳରେ ପୂର୍ଣ୍ଣ ହୋଇଥିବାରୁ ଏ ମେଘ ୯ ବ୍ୟାଘ୍ରତୁଲ୍ୟ ହେଲ । ୧୦ ମୃଗ ୧୧ ଶଶା, ୧୨ ଅଶ୍ୱ ଏମାନଙ୍କୁ ଦେଖି ୧୩ ପର୍ବତ ୧୪ ଚନ୍ଦ୍ର, ୧୫ ସୂର୍ଯ୍ୟ ଏମାନଙ୍କୁ କବଳିତ କରେ, ପର୍ବତରେ ଥିଲେ, ଚନ୍ଦ୍ରଙ୍କଠାରେ ଶଶା ଥିଲ, ସୂର୍ଯ୍ୟଙ୍କଠାରେ ଅଶ୍ୱମାନେ ଥିଲେ ଏହି ହେତୁରୁ ପର୍ବତ ଚନ୍ଦ୍ର ସୂର୍ଯ୍ୟଙ୍କୁ ଗ୍ରାସ କଲ ।୨।

ବର୍ଷାକାଳ ଯୋଗୁଁ ସବୁଆଡ଼ ୧ ଅନ୍ଧାର ଦିଶିଲ । ୨ ଆକାଶ ୩ ଦିଶିଲ ନାହିଁ । ୫ ଦିନ ରାତି ନଡ଼ର ୪ ଅମାବାସ୍ୟା ସହ ପରି ଦିଶିଲ । ଏହି ହେତୁରୁ ୮ ଚକ୍ରବାକ, ଚକ୍ରବାକୀ ୬ ଦିବସ ଶେଷ ହେଲ ବୋଲି ୭ ମହାଖିନ୍ନ ହେଲେ । ୯ ପଦ୍ମବନ ମୁଦିତ ରହିଲ । ନୋହିଲେ ସହ ହେଲ ବୋଲି ବିଚ୍ଛେଦ ଘଟିଥାନ୍ତା । ପଦ୍ମ ମୁଦ୍ରିତ ନୋହିବାରୁ ଦିନ ଥିବାର ଜାଣିଲେ । ଦିବସ ଶେଷ ହେବା ଜାଣି ୧୦ ଚୋରମାନେ ଆନନ୍ଦିତ ହେଲେ । ୧୧ ଜାର ପୁରୁଷମାନେ ୧୨ ଅନ୍ୟର ଗୃହକୁ ଯିବାପାଇଁ ଅତିଶୟ ଚଞ୍ଚଳ ହେଲେ ।୩।

ତଡ଼ିତ ମଧ୍ୟ ଅକ୍ଷର, (୧) ଇବନ୍ତ ଘନ ଉପର, (୨)
ଝଟ ଝଟ (୩) ଝଟକଇ (୪) ଏସନ ମତ (୫)
ସମ୍ବର ଅନ୍ତକ (୬) କର, ଖଡ଼ବ (୭) ଝଲକତର,
କମ୍ପନ ସଭସ୍ତ ମନ ହନନ ବତ !
ଚମ୍ପକଗର୍ଭକ କବର,
ମତ ରଞ୍ଜନ ଧରଇ ନଭ ଉପର ; ୪ ।
ଅନଳ (୨) ପସ୍ତୁ (୨) ପତନ, (୩) ପର ନଗରସ୍ଥ ଜନ (୪)
ଇତସ୍ତତ (୫) ନ ସରଇ ଅନବରତ, (୬)
ବନ (୭) ଧନଞ୍ଜୟ (୮) ହତ, ପ୍ରଜ୍ୱଳ ଅନ୍ତର ଗତ, (୯)
ଅନଙ୍ଗ ହଇବ (୧୦) ବଳ କର୍ମ ଏମନ୍ତ ।
ବହଇ ପ୍ରଖର ପବନ, (୧୧)
ଉଡ଼ଇ ଉଦକ କଣ (୧୨) ଜନୁ କମ୍ପନ । ୫ ।
ପଲବଇ ହତପକ୍ଷ (୧୩) ଏ ହକ (୧୪) ସହସ୍ର ଅକ୍ଷ, (୧୫)
ବହଇ ତଡ଼ିକ (୧୬) ବଣ ଦହଇ ନଗ, (୧୭)

---

ତଡ଼ିତ ମଧ୍ୟାକ୍ଷର ୧ "ଡ଼"ରେ ଇକାର ଯୋଗ ହେବାରୁ ତଡ଼ିତ ହେଲା, ସେ ତଡ଼ିତ ୩ ଶୀଘ୍ର ଶୀଘ୍ର ହୋଇ ୨ ମେଘ ଉପରେ ୪ ଖେଳିବାରୁ ୫ ଏହିପରି ଦେଖାଗଲା କି ୬ କନ୍ଦର୍ପର ଥିବା ୭ ଖଣ୍ଡା ସେ ଅଶେଷ ତେଜୀୟାନ୍ ହୋଇ କମ୍ପିତ ହେଉଛି ହାଣି ଦେବ କି ? ସେହିପରି ମନରେ ଭୟ ଜାତ ହେଲା । ଚମ୍ପାଯୁକ୍ତ କେଶ ସେହିଭଳି ଆକାଶ ମଧ୍ୟରେ ବିଜୁଳି ଖେଳୁଥିବା ପରି ମନୋହର ହୋଇଅଛି ।୪।

୧ ଅସୀମ ୨ ଜଳ ୩ ବର୍ଷା ହେଲା । ୪ ବିଦେଶୀମାନଙ୍କର ୬ ସର୍ବଦା ୫ ସନ୍ତାପ ବଢ଼ିଲା ୭ ବଣରୁ ୮ ଅଗ୍ନି ନିଭିଯାଇ ୯ ଅନ୍ତଃକରଣରେ ଜଳିଲା । ୧୦ ନିରାକାର ବିଧାତାର ବଳ ଓ କର୍ମ ଏପରି ଯେ ବନରୁ ନିଆଁ ନିଭି ହୃଦୟରେ ଜଳିଲା । ପୁଣି ଏହି ବର୍ଷାକାଳରେ ୧୧ ଝଞ୍ଜାପବନ ବହିବାରୁ ୧୨ ଜଳକଣା ସବୁ ଉଡ଼ି ଦେହରେ ଲାଗିବାରୁ ଦେହ କମ୍ପି ଉଠିଲା ।୫।

୧୩ ବିନାଶ ହେବା ପକ୍ଷସବୁ ପଲ୍ଲବ ଉଠୁଛି । ୧୪ ଏହି ଆଶଙ୍କା ୧୫ ଇନ୍ଦ୍ର ଙ୍କ ମନରେ ଜନ୍ମିବାରୁ ସେ ୧୬ ବଜ୍ରରେ ୧୭ ପର୍ବତମାନଙ୍କୁ ପୋଡ଼

ପ୍ରଜ୍ୱଳ ଶଳଭ (୧୮) ଗଣ.      ଲକ୍ଷକ ଅନଳ କଣ (୧୯)
ଭକ୍ଷ ବଣ ହଣ୍ଡି [illegible] ରଚ ପତଙ୍ଗ, (୨୦)
ବରଷଇ ଘନ ଉପଳ, (୨୧)
ଧରଟଇ (୨୨) ଅଂଗାର (୨୩) ଦମ୍ଭ ଚପଳ ।୬।
ରଙ୍ଗ ଜଳମଗ୍ନ ବନ [୧]   ଭଙ୍ଗ [୨] ଗର୍ଜନ [୩] ଭୟଦ
ଭ୍ରଷ୍ଟ (୪) ତଟ (୫) ନଗବର୍ଗ (୬) ବରଣନର
ଧବଳ ଛଦ (୭) ସମ୍ଭଳ,      କରକ କମଳ ଦଳ, (୮)
ଗମନ ସ୍ଥନ ଅବଧ (୯) ସରଉଦର, (୧୦)
ଖର୍ବ (୧୧) ପର୍ବତମାନଙ୍କର,
ଉପର ସ୍ଥଳ ଜର୍ଜ୍ଜର ବହଇ ଝର । ୭ ।
କର୍ଦ୍ଦମ (୧୨) ସର୍ବ ଅଧ୍ୱନ      (୧୩) ତ୍ୟକତ ସର ଶୟ୍ୱନ (୧୪)
ଦଗ୍ଧ ପର (୧୫) [illegible] ଜବସ (୧୬) ଘନ, ।୧୭।
ଗଗନ ମଣ୍ଡଳ (୧୮) ବକ-      ପ୍ରକର (୧୯) ଉଚ୍ଚ ରବକ, (୨୦)
ଅଳମକ ମଳମଳ ପତନ କଣ୍ଠ (୨୨)

---

ପକାଇଲେ । ୧୮ ଜୁଜୁଜଳ୍ପା ପୋକମାନେ ଉତ୍ପତ୍ତି ହେବାରୁ ୧୯ ଅଗ୍ନି କଣା ପରି ଜଣାଗଲା, ଏଣୁ ୨୦ ନାନାକାର ପକ୍ଷୀମାନେ ଭକ୍ଷଣ କରିବାରେ ପ୍ରବୃତ୍ତ ହୋଇ ଉଦାର କଲେ ୨୧ କୁଆପଥର ବର୍ଷିବାରୁ ୨୩ ଏଦେଶୀଙ୍କର ଦମ୍ଭ ୨୨ ନାଶ କଲା ।୬।

ବର୍ଷାକାଳରେ ୧ ନଦୀ ସବୁ ଗୋଳିଆ ପାଣିରେ ପୂର୍ଣ୍ଣ ହେଲେ, ୨ ଲହରୀ ୩ ଶବ୍ଦଦ୍ୱାରା ଭୟପ୍ରଦ ହେଲେ; ନଦୀ ୫ କୂଳରେ ଥିବା ୬ ବୃକ୍ଷମାନ ୪ ଉପୁଡ଼ି ପଡ଼ିଲେ, ଏଣୁ ସମୟରେ ୭ ହଂସମାନେ ୮ ପଦ୍ମପତ୍ରଗୁଡ଼ିଏ ଲେଖାଏଁ ବାଟର ଆହାର ନିମନ୍ତେ ଘେନି ୯ ସ୍ଥମାନଯୁର ୧୦ ମାନସସରୋବରକୁ ଗଲେ, ଶ୍ରେଷ୍ଠ ପର୍ବତମାନଙ୍କ ଉପରେ ଜର୍ଜର ହୋଇ ଝରଣା ସବୁ ପ୍ରବାହିତ ହେଲେ ।୭।

୧୩ ସମସ୍ତ ପଥ ୧୨ କର୍ଦ୍ଦମମୟ ହେଲା, ମନୁଷ୍ୟମାନେ ସରୋବର ୧୪ ନିଦ୍ରା ତ୍ୟାଗ କଲେ, ୧୫ ଦଗ୍ଧପ୍ରାୟ ପାଇଲା ପରି ହେଲେ ୧୬ ଘାସସବୁ ୧୭ ବହୁଳ ହେଲେ, ୧୯ ବକସବୁ ଉଚ୍ଚ ୨୦ ଶବ୍ଦ କରି ୧୮ ଆକାଶର ଶୋଭା

କଳକଣ୍ଠ (୧୨) ମଞ୍ଜନ ସତ,
ଖଳ (୨୩) କଳହ-ବଶର ସଜ୍ଜନ ମତ ।୮।
ଶଦ୍ଧଅଗ (୧) ଚକ (୨) ନବ, (୩) ପ୍ରବକବନ୍ତ (୪) କଦମ୍ବ,
ଗନ୍ଧଭର (୫) ମଙ୍ଗ ଅଧୁପଦ ବରଜ (୬)
ଧବ ଅନ୍ତକଜନ, (୭) ଅଞ୍ଜନ (୮) ଜଳ (୯) ରଞ୍ଜନ; (୧୦)
ସକଣ୍ଟକ (୧୧) ଗଣ୍ଡବତ (୧୨) ରମ୍ୟ (୧୩) ସଦ୍ଧଜ;
ସମନ୍ତ ସମସ୍ତ ଦର୍ଶନ,
ପ୍ରସ୍ରବଣଧର ଘର (୧୪) ପଦ୍ମ ନୟନ (୧୫) । ୯ ।
ଅମରବର (୧୬) ଉତନ ବଚ (୧୭) ବରନ ଯତନ,
ଭରତ ଅଗ୍ରଜ (୧୮) ଜନ ଆଧିତଦର, (୧୯)
ଏମନ୍ତ ରମ୍ୟ ସବନ, (୨୦) ଦର୍ଶନ ଷଣ କଦନ, (୨୧)
ଉପଶମନ (୨୨) ମଦ... ଶ ସଭ୍ଭର, (୨୩)
ଅମଳ (୨୪) କମଳ (୨୫) ଈକ୍ଷଣ; (୨୬)
ଅଶରଣ ଶରଣ ଅରକ୍ଷ (୨୭) ରକ୍ଷଣ ।୧୦।

---

ବଢ଼ାଇଲେ; ଭେକର ମକ ମକ ଶବ୍ଦ ୨୧ ଜାନକୁ ଶୁଭଳ; ୨୨ ଦୁର୍ଜ୍ଜନ ଲୋକ କଳହ କଲେ; ସଜ୍ଜନ ଲୋକ ଯେଉଁପରି ମୌନ ହୁଅନ୍ତି ସେହିପରି ଏ ବକାଙ୍କର ରବ ଶ୍ରବଣ କରି ୨୨ କୋକିଳ ତୁନ ହୋଇ ରହିଲା ।୮!

୧ ଅର୍ଜ୍ଜୁନ ବୃକ୍ଷର ଅଗ୍ରଭାଗରେ ୨ ଚକ୍ରବାକ ବାସକଲେ; କଦମ୍ବ ବୃକ୍ଷ ୩ ନୂତନ ୪ ପୁଷ୍ପବନ୍ତ ହେଲ, ୫ ତାହା ସୁଗନ୍ଧ ହେବାରୁ ୬ ଭ୍ରମରମାନେ ତାହାର ସଙ୍ଗୀହେଲେ, ଯେଉଁପରି ବରଷା ନାଖର ୧୨ ଗଣ୍ଡ ସ୍ଥଳରେ ୧୧ ରୋମ ଟାଙ୍କୁରି ଉଠେ, ସେହିପରି କଦମ୍ବ ପୁଷ୍ପର ଗଣ୍ଡସ୍ଥଳ ୮ କଜ୍ଜ୍ୱଳ ମିଶ୍ରିତ ୯ ଲୋଚକ ୧୦ ମିଶ୍ରିତ ହେବାଭଳି ୧୩ ମନୋହର ଦିଶିଲା । ୧୫ ଶ୍ରୀରାମ ୧୪ ମାଲ୍ୟବନ୍ତ ପର୍ବତ ଉପରେ ରହି ସମସ୍ତଙ୍କୁ ଦର୍ଶନ କଲେ ।୯।

୧୬ ଇନ୍ଦ୍ରଙ୍କର ସହରେ ରକ୍ଷିତ ଯେଉଁ ଇନ୍ଦ୍ରନୀଳମଣି ୧୭ ତୁଲ୍ୟ ବର୍ଣ୍ଣବିଶିଷ୍ଟ ଏବଂ ଲୋକମାନଙ୍କର ୧୯ ଦୁଃଖ ଦେଖି ଭରତଙ୍କର ବଡ଼ଭାଇ ଶ୍ରୀରାମ ୨୦ ଏପରି ମନୋହର ଯାହା ଅତ୍ୟନ୍ତ ଯେ, ତାଙ୍କର ମୁଖକୁ ଦେଖିଲାକ୍ଷଣି ୨୨ ଯମଭଳି ଯେଉଁ ମଦନ ୨୩ ଶୀଘ୍ର ବଶତା ସ୍ୱୀକାର କରିବ, ୨୪ ନିର୍ମଳ ୨୫

ଖଳ ଦଳବ ବଶର (୧)    କଦନ (୨) ମଦନ (୩) ଶର;
କରଇ ଅନବରତ (୪) ବଡ ଅପକ୍ଷ । ୫ ।
ଶ୍ରବଣ ଘନ ଗର୍ଜନ (୬)    କ୍ଷଣ ମନ ଛନ ଛନ୍ନ;
ରସ ରତନ (୭) ଆକରତଇର ରକ୍ଷ, (୮)
ଆସଇ ଭ୍ରମ (୯) ର ଏମନ୍ତ, (୧୦)
ଖଡ୍ଗଧର (୧୧) ଉଟଜ (୧୨) ଚତ୍ୱର (୧୩) ଗତ ।୧୧।
ଦରଶନ (୧) ନବଘନ, (୨) ବକପ୍ରକର [୩] ଦରଶନ (୪)
ଘନ ଘନ (୫) ଜଳକଣ (୬) ମଦ ପତନ [୭]
ଏସନ ଭ୍ରମ ସହଜ,    ସ୍ମର (୮) ଭବ [୯] ଜୟ ସଜ,
ଅଞ୍ଜନ ମତ୍ତଗଜର (୧୦) କନ୍ଧ ମଣ୍ଡନ,
ଗରଜନ ଘଣ୍ଟସ୍ୱନ (୯)
ସଦନ [୧୨] ନନ୍ଦକ ଭଟ ଯଶ କଥନ । ୧୨ ।

---

ପଦ୍ମ ତୁଲ୍ୟ ୨୬ ନେତ୍ର ଯାହାଙ୍କର ଏବଂ ଯେ ଅଶରଣ ଲୋକର ଶରଣ ପନ୍ଥ ହୁଅନ୍ତି ୨୭ ଅରକ୍ଷ ଜନଙ୍କୁ ରକ୍ଷା କରନ୍ତି । ୧୦ ।

ଏଭଳି ଯେଉଁ ଶ୍ରୀରାମଚନ୍ଦ୍ର, ତାଙ୍କୁ ଦ୍ରଷ୍ଟା ୧ ବିଧାତା ଯୋଗ୍ୟ ୩ କାମ ୪ ସବୁବେଳେ ୫ ଶବ୍ଦ ତାକାଶ ନିଜର ଶରୀରେ ୨ କୀର୍ତ୍ତନ କରୁଅଛି । ଏହି ସମୟରେ ୬ ମେଘ ଧ୍ୱନି ଶୁଣି ମନଚଞ୍ଚଳ ହେଲା, ମନରେ ଭାବନା କଲେ ୭ ଶ୍ରେଷ୍ଠ ରସର ଖଣି ସୀତାଙ୍କୁ ୮ ହରି ନେଇଥିବା ରାବଣ ଅସୁର ଆସୁଅଛି କି । ଯେ ସ୍ୱବକରେ ୯ ତ କୁ ରାବଣ କହନ୍ତି, ଏହି ହେତୁରୁ ମେଘ ରବ ଶୁଣି ୧୦ ଏପରି ଭ୍ରାନ୍ତ ହେଲା । ଭ୍ରମରେ ପଡ଼ି ହୋଇ ୧୧ ଖଣ୍ଡା ଧରି ୧୨ ପର୍ଣ୍ଣଶାଳାରୁ ୧୩ ଅଗଣାକୁ ଗଲେ ।୧୧।

୨ ନୂତନ ମେଘ ୧ ଦେଖି ଶ୍ରୀରାମଙ୍କର ଏମନ୍ତ ଭ୍ରମ ସହଜରେ ହେଲା ୮ କି କନ୍ଦର୍ପ ୯ ଶିବଙ୍କୁ ଜୟ କରିବାକୁ ଅଞ୍ଜନା ନାମକ ୧୦ ମତ୍ତହସ୍ତୀର ସ୍କନ୍ଧେ ବସି ଆସୁଅଛି କି ? ୩ ବକମାନେ ସେ ୪ ଦନ୍ତପନ୍ତି ପ୍ରାପ୍ତ ଏବଂ ୫ କ୍ୟଗ୍ରରେ ଯେଉଁ ୬ ଜଳ ବିନ୍ଦୁମାନେ ବର୍ଷୁଅଛନ୍ତି ସେ ୭ ମଦଜଳ ପତନ ହେଉଅଛି କି ?

ମେଘ ଗର୍ଜନ ସେହି ସେ ୧୧ ବାଦ୍ୟ ବିଶେଷ ପ୍ରାପ୍ତ ବାଜୁଅଛି । ଆନନ୍ଦରେ ଭଟ ୧୨ ଗୃହକର ଯଶ ବର୍ଣ୍ଣନ କରୁଅଛନ୍ତି କି ? ।୧୨।

ଷଡ଼ବଦନ ସ୍ୟନ୍ଦନ (୧୩) ଚନ୍ଦକ (୧୪) ଗ୍ରୀଷ୍ମଧରଣ,
ଭ୍ରମର ଉଗଳ (୧୯) ବଜ୍ର ଅସ୍ତ୍ର ଉଜ୍ଜ୍ୱଳ, (୧୬)
ଚନ୍ଦ୍ରଶରର ଅଶନ (୧୭) ସତ ଚକ୍ଷ ଚରଣ୍ଡନ
ଲକ୍ଷ ଦର (୧୮) ଶବଦ ଚହଳ ଗହଳ,
ଏ ସ୍ତବ କଥନ ସତ୍ୱର,
ମମ ଏକଜନ (୧୯) ହର ଭ୍ରମ ନ କର ।୧୩।
ଜନକ ସତ୍ୟବନ୍ଧନ (୧), ଗମନ ଗହନସ୍ଥଳ,
ଭସ୍ମ ଚର୍ମ ଜଟାଧର ନାଗ ଭବନ, (୩)
ଅନଳ (୪) ଛଳର ସନ୍ତ, ଅର୍ଦ୍ଧ ଶଶଧରବତ (୫)
ଦଗ୍ଧ ସ୍ୱର୍ଣ୍ଣବତ ଧନ (୬) ଦନ୍ତ ବସନ,
ଛବ ଘର (୭) ହସ୍ତନସ୍ତନ (୮)
ଉରଗ (୯) ଅଙ୍ଗଦ (୧୦) ବୃଷଧ୍ୱଜ (୧୧) ଉଲଗ୍ନ, ।୧୪।
ଚଳ ଚଳ ମନମଥ (୧୨), ରଜତପ୍ରସ୍ତ (୧୩) ପ୍ରମଥ,
ଦର ୧୪ ସଙ୍ଗ ଅନରଥ ସମର୍ଥପଣ ।

---

ଘମଚନ୍ଦ୍ର ବର୍ଷା କାଳରେ ୧୩ ମୟୂର ୧୪ ଚନ୍ଦ୍ରକାକୁ କନ୍ଦର୍ପର ଛତ୍ର, ଭ୍ରମରମାନଙ୍କୁ ୧୫ ଦୂତ, ବଜ୍ରକୁ ୧୬ ଶର ଏବଂ ୧୭ ଇନ୍ଦ୍ରଧନୁକୁ ଧନୁ, ପକ୍ଷୀଙ୍କ ଚହଳକୁ ୧୮ ଶଙ୍ଖଧ୍ୱନି ବୋଲି ସ୍ତବକରି କହିଲେ ହେ କନ୍ଦର୍ପ ! ମୁଁ ଗୋଟିଏ ୧୯ ଏକଲା ମନୁଷ୍ୟ, ତୁମ୍ଭର ଶତ୍ରୁ ହର ଅର୍ଥାତ୍ ମହାଦେବ ନୁହେଁ । ୧୩ ।

୧ ମୁଁ ପିତୃସତ୍ୟ ପାଳିବାକୁ ଭସ୍ମ, ଜଟା, ଚର୍ମ, ଧାରଣକରି ୨ ବନସ୍ତକୁ ଆସି ୩ ପର୍ବତରେ ବାସ କରିଅଛି । ସୀତା ବିରହରେ ମୋହର ୫ ଅର୍ଦ୍ଧଚନ୍ଦ୍ର ଭଳି ୪ ଚୂର୍ଣ୍ଣ କୁନ୍ତଳ ପାଣ୍ଡୁର ବର୍ଣ୍ଣ ହୋଇଅଛି ଏବଂ ସୀତାଙ୍କର ୬ ବସ୍ତ୍ର ଦଗ୍ଧସ୍ୱର୍ଣ୍ଣ ଭଳି ହୋଇଅଛି, ଏହା ଦେଖି ତୁମ୍ଭେ ମୋହଠାରେ ଶିବଭ୍ରମ ନ କର ତୁମ୍ଭ ୭ ଶତ୍ରୁ ଶିବ ୮ ତ୍ରିନେତ୍ର ହୋଇ ହସ୍ତରେ ୧୦ ଖଡ୍ଗ ଭଳି ୯ ସର୍ପ ଧାରଣ କରି ଉଲଗ୍ନ ହୋଇ ୧୧ ବୃଷଭାରୋହଣ କରିଥାନ୍ତି । ୧୪ ।

୧୨ ହେ କନ୍ଦର୍ପ ! ଯେବେ ସମର୍ଥପଣ ଅଛି, ତେବେ ୧୪ ପ୍ରମଥବର ଅର୍ଥାତ୍ ଶିବଙ୍କ ସହିତ କଳହ କରିବାକୁ ୧୩ କୈଳାସ ପର୍ବତକୁ ଯାଅ । ୧୫ ।

ଏକସ୍ଥ (୧୫) ଦମ୍ଭ ନ ମନ୍ଥ, ଏ ଯଶ ପ୍ରକଟ ବ୍ୟର୍ଥ (୧୬),
ନ ବହ ନ ବହ ଏଣୁ ମଦ ଲକ୍ଷଣ, (୧୭)
ସର୍ପସମ ପର ଅପର, (୧୮)
ନ କର ନ କର ହତ ପଞ୍ଚମଶର (୧୯) ।୧୫।

ଭସ୍ମ କରଇ ଇନ୍ଧନ, (୧) ହତ ଦହନ ବହନ (୨)
ମମ ହତ ଅନ୍ତ ତବ ଏସନ ଦଣ୍ଡ ।
ଅନୁଭବ (୩) ଅଛଇ ତ, ଦଗଧ କଷଣ (୪) ସତ, (୫)
ମହୀଅପଣ (୬) ନ ମଣ୍ଡ ଏ ମର୍ତ୍ତ୍ୟଖଣ୍ଡ (୭)
ଖଳ ଦଣ୍ଡଇ ନତଜନ, (୮)
ତବ ବନ୍ଧୁ ଯଶ ଚନ୍ଦ୍ରଧର (୯) ନନ୍ଦନ (୧୦) ।୧୬।

ଏ ଦଶରଥ ନନ୍ଦନ, ଶରଣ ଉତ୍ସୁକ (୧୧) ଜନ,
କରଇ ସ୍ତବ ଏମନ୍ତ (୧୨) ଭର ଏମନ ।

---

ଏକୁଟିଆ ଲୋକର ଦମ୍ଭ ମନ୍ଥନ କରନାହିଁ, କାରଣ ଏଭଳି ଏକାକୀ ଲୋକର ଦମ୍ଭ ମନ୍ଥନ କରିବା ଯଶ ବିଫଳ, ତୁମ୍ଭେ ୧୭ କସ୍ତୁରୀ ଭଳି ଲକ୍ଷଣ ଧରନାହିଁ । ସେ ଯେଉଁଠାରୁ ଜନ୍ମ ହୁଏ ତାକୁ ନାଶ କରେ । ଅତଏବ ତୁମ୍ଭେ ମନୋଜ, ମନରୁ ଜାତହୋଇ କସ୍ତୁରୀ ଭଳି ତାକୁ ନାଶ ନ କର । ସର୍ପ ଯେଉଁଭଳି ଶତ୍ରୁ ୧୮ ମିତ୍ର ନ ବୁଝି ଦଂଶନ କରେ ତୁମ୍ଭେ ସେଭଳି ନ କର ଅର୍ଥାତ୍ ୧୯ ହେ କନ୍ଦର୍ପ ! ମୁଁ ତୁମ୍ଭର ଶତ୍ରୁ ନୁହେଁ, ମୋତେ ନାଶ କର ନାହିଁ ।୧୫।

ଅଗ୍ନି ୧ କାଷ୍ଠକୁ ଭସ୍ମ କରିପାରେ ନିଜେ, ୨ ନାଶ ହୁଏ । ତୁମ୍ଭେ ମନରୁ ଜାତ ହୋଇଥିବାରୁ ମୁଁ ହତ ହେଲେ ତୁ ଏଭଳି ଦଣ୍ଡ ପାଇବୁ ଅର୍ଥାତ୍ ଅଗ୍ନି ଭଳି ନାଶଯିବୁ, ତୋତେ ଦଗ୍ଧ ହେବା ୪ କଷ୍ଟ ୩ ଜଣାଅଛି ୫ ଏହା ନିଶ୍ଚୟ । ଅତଏବ ମୋତେ ନାଶ କରି ମର୍ତ୍ତ୍ୟ ୭ ଭୁବନରେ ଅସୀମ ୬ ଅକୀର୍ତ୍ତି ଅର୍ଜନ ନ କର, ୮ ବିନମ୍ର ଲୋକଙ୍କୁ ଖଳଲୋକ ଦଣ୍ଡ ଦିଅନ୍ତି, ତୁ ୯ ଶ୍ରୀକୃଷ୍ଣଙ୍କର ୧୦ ପୁଅ ହୋଇ ମୋତେ ଦଣ୍ଡିଲେ ତୋହର କଣ ଭଲ ଯଶ ହେବ । ୧୬ ।

ହେ କନ୍ଦର୍ପ ! ମନରେ ଏହା ବିଚାର କର, ଏ ଦଶରଥଙ୍କର ପୁତ୍ର, ଶିବ ନୁହେ ୧୧ ଉତ୍ସୁ ହେବୁ ଶରଣାପନ୍ନ ହୋଇ ୧୨ ଏ ଭଳି ସ୍ତୁତି କରୁଅଛି, ୧୩

ତବ ଧନ ହରଣକ (୧୩)   ପରମ ସମ୍ବର ଲକ୍ଷକ, (୧୪)
ମମ ପର (୧୫) ଦଶକନ୍ଧ (୧୬) (୧୭) ଯତନ,
କରଣ ରକ୍ଷଣ ଏ ଘଟ, (୧୮)
ରସଜ୍ଞ (୧୯) ଜନନସହ୍ୟ (୨୦) ଅନ୍ତର କଷ୍ଟ (୨୧) ।୧୭।

ଘନ (୧) ପ୍ରବଳ ଏମନ୍ତ   ଚଇତନ (୨) ଉପଗତ, (୩)
ଜପନ ମଧ୍ୟର ଗତପ୍ରସଙ୍ଗ, (୪)
ଏ ଜଳଦ (୫) ଗରଜନ   କର ଶ୍ରବଣ କମ୍ପନ,
ତର ତର (୬) ଗମନ ମଣ୍ଡଇ ଉତ୍ସଙ୍ଗ, (୭)
ଶୟନର ଲବ (୮) ଅନ୍ତର ।
ନ କରଇ ଉରଭର (୯) ଧନ ଭୟର ।୧୮।

ଏ ଓର ବଲ୍ଲ ଜନନ,   ରକ୍ଷ (୧) ଭକ୍ଷଣ ଏଜନ,
ଚନ୍ଦନ ମହ ଉରଗ (୨) ରକ୍ଷଣ ମତ ।
ଅଲକ ଅନ୍ତର ଗତ,   ବରଷ ମଣଇ ସତ,
ଏ ଜନ ବନ ପର୍ବତ ଅନ୍ତର ଗତ,

---

ତୁମ୍ଭର ସ୍ତ୍ରୀ ରତିଦେବୀଙ୍କୁ ହରି ନେଇ ଥିବା ଶମ୍ବରାସୁର ୧୪ ତୁଲ୍ୟ ମୋହର ୧୫ ଶତ୍ରୁ ୧୬ ରାବଣକୁ ୧୭ ବିନାଶ ପାଇଁ ଯତ୍ନ କରିବାକୁ ମୁଁ ମୋହର ୧୮ ଏ ଦେହକୁ ରଖିଅଛି; ୧୯ ରସଜ୍ଞ ଲୋକ ୨୧ ବିଚ୍ଛେଦ କ୍ଲେଶ ୨୦ ସହି ପାରଇ ନାହିଁ । ୧୭ ।

ଏପରି ଯେ ମେଘ ସେ ପ୍ରବଳ ହୋଇଅଛି ବୋଲି ୨ ଚେତା ୩ ଉପସ୍ଥିତ ହେବାରୁ ମନ ମଧ୍ୟରେ ସୀତା ୪ ଯିବା ବିଷୟ ବିଚାର କରି କହିଲେ ଯେଉଁ ସୀତା ୫ ଏ ମେଘ ଗର୍ଜନ ଶୁଣିଲା କ୍ଷଣି କମ୍ପିତ ହୁଏ ୬ ଚଞ୍ଚଳ ଗତି କରି ମୋହର ୭ କୋଳକୁ ଭୂଷିତ କରେ ଏବଂ ଶୟନ କାଳରେ ୧୦ ଭୟ ହେବୁ ୯ ମୋ: ବକ୍ଷସ୍ଥଳକୁ ତାହାର ବକ୍ଷସ୍ଥଳ ୮ ଲେଶ ମାତ୍ର ଅନ୍ତର କରଇ ନାହିଁ ।୧୮।

ଏ ଭଳି ଭୟ ବିଶେଷ ରୂପେ ଜାତହେଲା । ଚନ୍ଦନକୁ ୨ ଶ୍ରେଷ୍ଠ ସର୍ପ-ମାନେ ରକ୍ଷା କଲା ଭଳି ଏପରି ଭୟଯୁକ୍ତା ସୀତାଙ୍କୁ ପୁଣି ୧ ରାକ୍ଷସ ରଖିଅଛି ।

କଲି ନୀଳନନ୍ଦନ ସମ,

ଦଇବ କରଇ କଷ୍ଟ ସକଳ ସମ । ୧୯ ।

ସ୍ୱଚ୍ଛ (୩) ବସ୍ତ୍ର (୪) ବପ୍ର (୫) ସ୍ଥଳ, ଖର କରଜ (୬) ଲଙ୍ଗଳ,

କଣଇ କର୍ଷକ (୭) କର ସଦନ ଧନ,

ହରଷ ଶସ୍ୟ ସମ୍ପଦ, କରଧନ ରସପ୍ରଦ

ରକ୍ଷଣ କର କରଣ (୮) ମଧ୍ୟ ଯତନ ।

ଏ ଯତ୍ନ ଭଗନ ଋଭସ (୯)

କବଳକ (୧୦) କଷ୍ଟ ଏଣ (୧୧) ସଫଳ ଶସ୍ୟ ।୨୦।

ଚନ୍ଦ୍ର ଉପଳ (୧) ଦ୍ରବଣ (୨), କରଇ ଶଶମଣ୍ଡନ [୩]

ତଦ୍ବତ ମମ (୪) ଦ୍ରବଣ କରଇ ଧନ (୫) ।

ଏ ଅପସନ (୬) ଇନ୍ଧନ, (୭) ସତ କରଇ ଚନ୍ଦନ

ଦଗଧଇ ସ୍ମର [୯] ଜ୍ୱଳନ (୧୦)

ତ୍ୟକ୍ତ ନ କରଇ ବଣ ଗନ୍ଧ ସଦନ ।୨୧।

---

ପଲକ ପଡ଼ିବାମାତ୍ର ଯେଉଁ ସମୟ ତାକୁ ବରଷେ ବୋଲି ମନରେ ଭାବଇ, ଏପରି ଯେଉଁ ସୀତା ବନ ପର୍ବତରୁ ମୋହଠାରୁ ଅନ୍ତର ହୋଇଗଲେ, ଚନ୍ଦ୍ରବଂଶୀୟ ନଳ ରାଜାଙ୍କ ପରି ବିଧାତା ଯୋଗୁଁ ମୁଁ କଷ୍ଟ ସହିଲି ।୧୯।

ସୀତାଙ୍କର ୩ ନିର୍ମଳ ୪ ବକ୍ଷ ୫ କିଆରିକୁ ୬ ନଖ ଲଙ୍ଗଳ ଦ୍ୱାରା ୭ କର୍ଷଣ କରିବାରୁ ରସପ୍ରଦ ହୋଇ ଆନନ୍ଦ ଶସ୍ୟ ସମ୍ପତ୍ତି ବର୍ଦ୍ଧିତ ହେବାରୁ ୮ ପ୍ରକାର ମଧ୍ୟରେ ଯତ୍ନ କରି ରଖିଥିଲି, ଏପରି ଯେଉଁ ଯତ୍ନରେ ସେ ୯ ଶୀଘ୍ର ଭଗ୍ନ ହେଲା, ଏଣୁ ସେ ସଫଳ ହେବାବେଳେ ୧୧ କଷ୍ଟ ମୃଗ ଶସ୍ୟକୁ ୧୦ ଖାଇଗଲା ।୨୦।

୩ ଚନ୍ଦ୍ର ୧ ଚନ୍ଦ୍ରକାନ୍ତ ମଣିକୁ ୨ ତରଳ କଲାପରି ୫ ସୀତାଙ୍କ ରସ ୪ ମୋତେ ତରଳ କରାଉ ଅଛି । ମୋର ୬ ଶରୀର ୭ କାଷ୍ଠରେ ସୀତାଙ୍କର ସ୍ମୃତିରୂପ ମଳୟ ପବନ ୮ ଲାଗିବାମାତ୍ରେ ତାହା ଚନ୍ଦନ ହୁଅଇ, ଏପରି ଶରୀର ଚନ୍ଦନକୁ ୯ କନ୍ଦର୍ପ ୧୦ ଦଗ୍ଧ କରୁଅଛି । ଚନ୍ଦନ ଦଗ୍ଧ ହେଲେ ସୁଦ୍ଧା ଯେପରି ନିଜର ଗନ୍ଧ ଛାଡ଼େ ନାହିଁ, ସେହିପରି ମୁଁ କାମପୀଡ଼ାରେ ଅଧୀନ ହୋଇ ସୁଦ୍ଧା ସୀତାଙ୍କଠାରୁ ସ୍ନେହ ଛାଡ଼ି ପାରୁନାହିଁ ।୨୧।

ଧନ ଶତପତ୍ର (୧୧) ବନ; ମକରନ୍ଦ ପସ୍ଥ (୧୨) ମନ,
ଅନ୍ୟ ରସ ନ ଇଚ୍ଛଇ ସନ୍ତତ (୧୩) ବଶ,
ସତ ଛଇଳ ରତନ, (୧୪) ରମ୍ୟ (୧୫) ଅର୍ଣ୍ଣବମଜ୍ଜନ (୧୬)
ଉଚ୍ଚସ୍ତନ ଅମରଧର (୨୦)
ସଙ୍ଗ ଅଙ୍ଗ ପତଙ୍ଗ କର (୨୧) କର ।୨୨।
ଧନର (୧) ଅଙ୍ଗ ସଙ୍ଗମ ଉଷ୍ଣ [୨] ସମୟର ରମ୍ୟ
ସତ ମଳୟଜ (୩) ସମ ତପତ (୪) ହର ।
ଜଡ଼ ସମୟ (୫) ଜଡନ (୬) ତପନ କର (୭) ରଞ୍ଜନ,
ଉଭୟ (୮) ମନ ରଞ୍ଜନ (୯) ଏ ସମୟର ।
ଏମନ୍ତ ରଙ୍ଗ ନ ଧରଇ,
ଶମ, ଦମ, ବ୍ରହ୍ମଚର୍ଯ୍ୟ ଦମ୍ଭ ହରଇ ।୨୩।
ଅଙ୍ଗଗନ୍ଧ (୧୦) ଚହଟଇ, (୧୧) ପଦ୍ମଗରବ (୧୧) ସରଇ,
ଗନ୍ଧଗ୍ରହ (୧୩) ନ ସରଇ ଆନ ଗନ୍ଧର ।
ପଦ୍ମର (୧୫) ପତନ ସ୍ଥଳ, ବସଇ ମତ ଭ୍ରମର (୧୬)

---

ସୀତା ୧୧ ପଦ୍ମବନ ଭଳି ହୋଇଥିବାରୁ, ମୋହର ମନ ୧୨ ଭ୍ରମର ୧୩ ସର୍ବଦା ତାହାଠାରେ ବଶ ହୋଇ ଅନ୍ୟ ରସ ଇଚ୍ଛା କରୁନାହିଁ, ୧୪ ସୀତା ଯେ ୧୫ ମନୋରମ ୧୬ ସାଗର ପରି ତହିଁରେ ମୋ ୧୮ ନୟନ ଦ୍ୱୟ ୧୯ ମୀନ ପରି ହୋଇ ୧୭ ସର୍ବଦା ନିମଜ୍ଜିତ ହୋଇଥିଲା । ତାହାର ଉଚ୍ଚ ୨୦ ସ୍ତନ ମେରୁ ପର୍ବତ ଭଳି, ତହିଁରେ ମୋର ହସ୍ତରୂପ ୨୧ ସୂର୍ଯ୍ୟକିରଣ ଯେଉଁ ଅଙ୍ଗ ସଙ୍ଗ କରିଥିଲା, ତାହା ଭାଙ୍ଗିଗଲା । ୨୨ ।

୧ ସୀତା ଅଙ୍ଗ ସଙ୍ଗ ହେଲେ ୨ ଗ୍ରୀଷ୍ମକାଳରେ ତା ଅଙ୍ଗ ୩ ଚନ୍ଦନ ଭଳି ଶୀତଳ ହୋଇ ୪ ତୃପ୍ତି ଦାନ କରେ । ୫ ଶୀତକାଳରେ ଆଲିଙ୍ଗନ କଲେ ୭ ସୂର୍ଯ୍ୟକିରଣ ଭଳି ଉଷ୍ଣ କରିଦିଏ, ଏବଂ ବର୍ଷା କାଳରେ ୮ ଶୀତଳ, ଉଷ୍ଣ ଏ ଦୁହିଁଙ୍କୁ ଜାତ କରି ୯ ମନୋହର ହୁଏ, ଏପରି ଯେଉଁ ସୀତା ତାଙ୍କ ଶମ ଦମ ସନ୍ୟାସୀମାନେ ଦେଖିଲେ ସେମାନଙ୍କର ଦମ୍ଭ ନାଶ ହେବ । ୨୩ ।

ସୀତା ୧୦ ଅଙ୍ଗବାସ ୧୧ ବସ୍ତ୍ର ରିତ ହେବାରୁ ପଦ୍ମର ୧୨ ଦର୍ପ ନାଶ ହୁଏ ଏବଂ ୧୩ ନାସା ଅନ୍ୟ ଗନ୍ଧରେ ରସଇ ନାହିଁ, ତାହାର ୧୪ ପାଦ

ଲଚ୍ଛଇ ଏତ କମଳଚୟ (୧୬) ଈଶ୍ବର ।
ଏମନ୍ତ ରଞ୍ଜନ ଗମନ,
ଚଳଇ ମନମଥର (୧୭) ସ୍ବର୍ଣ୍ଣସ୍ୟନ୍ଦନ (୧୮) ।୨୪।

ଘର ଉପର ଶୟନ, ସମସ୍ତର ମମ ଧନ (୧)
ମହାଉଜ୍ଜ୍ବଳ [୨] କନକ (୩) ପଦକ ମତ ।
ତଡ଼ିତ ମ୍ୟ ଅଧର, ଲବନ୍ତ ଘନ ଉଦର [୪]
ଝଟକ (୫) ବଢ [୬] ଛଟକ ବଢଇ ସତ ।
ନଭସଦ (୭) ପଲକ ହର (୮)
ମମ ପଲକ ଅନ୍ତର ବଡ଼ ନ କର ।୨୫।

ଧକ (୯) ରମ (୧୦) ସ୍ବର୍ଣ୍ଣସର, (୧୧) ସ୍ବଚ୍ଛ (୧୨) ଘନ (୧୩)
ରସଭର (୧୪), ସଗନ୍ଧ ଅମଳ (୧୫) ଶତଦଳର (୧୬) ସ୍ଥଳ ।
ରଚଇ ରସତ ସତ, ଧବଳପକ୍ଷର (୧୭) ମତ,
କରମ (୧୮) ଅନ୍ତର ଗତ ମନ ଚଞ୍ଚଳ (୧୯)

---

ପଡ଼ିଥିବା ସ୍ଥାନରେ ୧୫ ଭ୍ରମର ବସଇ ଏବଂ ବସ୍ତର କରେ ଏ ସୀତା ତ ୧୬ ପଦ୍ମ ସମୂହର ଈଶ୍ବର, ସୀତାଙ୍କର ଗତ ଏ ଭଳି ମନୋହର ଯେ ୧୭ କନ୍ଦର୍ପର ୧୮ ସ୍ବର୍ଣ୍ଣରଥ ପରି ଚଳଇ ।୨୪।

୧ ମୋହର ଘରର ଉପରେ ସୀତା ଶୋଇଥିବାବେଳେ ୩ ସ୍ବର୍ଣ୍ଣପଦକ ଭଳି ୨ ଅତି ନିର୍ମଳ, 'ଡ'ରେ ଇକାର ଯୋଗ ହେବାରୁ ତଡ଼ିତ ହେଲା ସେ ୪ ମେଘ ଉଦରରେ ୫ ଦେଦୀପ୍ୟମାନ ହେଲା ୬ ପରି ସୀତା ଛଟକ କରଇ ଏ ସତ୍ୟ ୭ ଦେବତାମାନେ ଦେଖି ୮ ଅପଲକ ହୋଇ ରହନ୍ତି, ଅତଏବ ମୋହର ଅପଲକ ହେବା ବଡ଼ ନୁହେଁ ।୨୫।

୯ ସୀତା ୧୦ ମନୋହର ୧୧ ସ୍ବର୍ଣ୍ଣ ସରୋବର ସମାନ, ସରରେ ୧୩ ଜଳ ୧୪ ପୂର୍ଣ୍ଣ ହୋଇଥାଏ, ସୀତା ୧୨ ନିର୍ମଳ ୧୩ ନବରସରେ ପୂର୍ଣ୍ଣ ଅଟନ୍ତି, ସରୋବରର ୧୫ ନିର୍ମଳ ୧୬ ପଦ୍ମ ସୁଗନ୍ଧବିଶିଷ୍ଟ, ସୀତାଙ୍କ ଶରୀର ମଧ୍ୟ ସୁଗନ୍ଧବିଶିଷ୍ଟ । ମୁଁ ଏଣୁକରି ୧୭ ହଂସ ପରି ରସ ରଚନା କରଇଁ, ୧୮ ଦୈବ

ବସ୍ତୁ ଲପ୍ତ ତପସ (୨୦) ମତ
ସର୍ବଖଣ୍ଡ ଏକ ଲପ୍ତ ମମ ଏ ସତ । ୨୬ ।

ଶର୍କର ଲକ୍ଷ ବଚନ, ଏ ଫଳ (୧) ବହଇ ଧନ,
ବଶ ଶ୍ରବଣ ନୟନ ସତ ଏଥର ।
ଏ ବଡ଼ ଷଡ଼ରସର, ଏ ଦ୍ରବ୍ୟ ଅଶନ (୨) କର,
ସନ୍ତତ ନ ରସଇ ଅନ୍ୟ ରସର,
କରଉ ମନର ଜଳଦ,
ଅଟଇ ଧନ ସକଳ ହରଷ ପ୍ରଦ ।୨୭।

ରସ ଉତ୍ତର ମନ୍ମର, କରଇ ସତ ଅନ୍ତର,
ଅନ୍ତରଗତର (୩) ସ୍ମର (୪) ଉରଗ (୫) ଗର, (୬)
ଉରଜ ହସ୍ତ (୭) ଚନ୍ଦନ, ଗତ ହରଇ ବଦନ (୮)
କ୍ଷତ ପ୍ରଚଣ୍ଡ ଜ୍ୱଳନ ତଦପରର
ଅନ୍ତର (୯) ଏସନ ଦଣ୍ଡଇ,
ସମ ଦମ ବ୍ରହ୍ମଚର୍ଯ୍ୟ ଦମ୍ଭ ଖଣ୍ଡଇ । ୨୮ ।

---

ବଶତଃ ମୋଠାରୁ ଅନ୍ତର ହୋଇ ଯିବାରୁ, ୧୯ ମନ ଉଦ୍‌ବିଗ୍ନ ହେଉଅଛି, ୨୦ ତପସ୍ୱୀମାନେ ବ୍ରହ୍ମ ଲପ୍ତ କଲ ପରି ମୁଁ ତାହାଠାରେ ସର୍ବଦା ଲପ୍ତ କରିଅଛି । ୨୬ ।

ସୀତାଙ୍କ ବଚନ ଗୁଡ଼ ଭଳି ଅଟେ ଏବଂ ସୀତା ମଧ୍ୟ ଶର୍କରା ପରି ଅଟନ୍ତି, ଯେଉଁ ହେତୁରୁ ଶର୍କରା ୧ ସୀତା ପଦକୁ ବହୁଅଛି, ଏହା ନିଶ୍ଚୟ ଶ୍ରବଣ ଓ ନୟନର ବଶ ହୋଇଅଛି, ଶର୍କରା ଭଳି ବଚନ ହୋଇ ଥିବାରୁ, ଶ୍ରବଣ ଏବଂ ସେ ସୀତା (ଶର୍କରା) ନାମକୁ ବହୁଥିବାରୁ ନେତ୍ର ବଶ ହୋଇଅଛି । ଏହି ଶର୍କରା ଷଡ଼ ରସମାନଙ୍କରେ ଶ୍ରେଷ୍ଠ ଅଟେ, ଯେଉଁ ଲୋକ ଏହି ରସ ସର୍ବଦା ୨ ଭୋଜନ କରେ ସେ ଅନ୍ୟ ରସରେ ରସଇ କି ? ହେ ଜଳଦ ! ମନରେ ବିଚାର ମୋର ସୀତା ସେ ସକଳ ପ୍ରକାର ହରଷକୁ ଦାନ କରଇ । ୨୭ ।

ସୀତାଙ୍କ ରସ ବିଷୟରେ ଉତ୍ତର ମନ୍ମଥର, ୩ ମନୋଜ ୪ କନ୍ଦର୍ପ ସେ ମୋ ହୃଦୟରେ ଆପଣାର ୬ ବିଷତ୍ୟାଗ କରଇ ଏହା ସତ, ମାତ୍ର ସୀତାଙ୍କର

ସ୍ମର (୧) ଜ୍ୱର ହର (୨) ରସ, (୩) ଅଟଇ ଧନର ରସ, (୪)
ତଦ ଉପକରଣ (୫) କରଇ ରଚନ,

ଯତନ ବସ୍ତୁର ପର ହରଇ କରଇ କର,
ଘଟନ କରକ (୬) ଫଳ ଉନ୍ନତ ସ୍ତନ ।
ମମ ଅଙ୍ଗ ଅବନ ଦଣ୍ଡ (୭);
ଅନ୍ତର ଏଥି ଉପର ଅଛଇ ଦଣ୍ଡ । ୨୯ ।

ଏ ସମସ୍ତ ଝର ଝର, ବରଷଣ ତର ତର, (୧)
ପ୍ରବଳ (୨) ପ୍ରକଟ (୩) ଘଟ ଘଟ ଶବଦ,

ପ୍ଳବଗଣ (୪) ଭକ ଭକ, ସମତ, (୫) ରବକ (୬) ବକ
ଖର (୭) ଖର ଅନ୍ୟକର (୮) ପ୍ରଜସ୍ତ ପ୍ରଦ (୯) ।

---

ବାକ୍ୟ ମନ୍ତ୍ର ଶୁଣିଲେକ୍ଷଣି ତାହାର ବିଷ ଅନ୍ତଃକରଣରୁ ଦୂରୀଭୂତ ହୋଇଯାଏ, ୭ କୁଚଦ୍ୱୟରୂପ ଚନ୍ଦନଗଦ; ଯାହାର ପ୍ରଚଣ୍ଡ ଜଳନ ଅର୍ଥାତ୍ କାମାଗ୍ନିକୁ ୮ ଶୀଘ୍ର ନାଶକରେ । ବର୍ତ୍ତମାନ ୯ ବିଚ୍ଛେଦାବସ୍ଥା ଶୀଘ୍ର ଦଣ୍ଡଇ ଅର୍ଥାତ୍ ପୂର୍ବ ପରି କନ୍ଦର୍ପ ସର୍ପ ଦଣ୍ଡ ଦେଇ ଶମ ଦମ ବ୍ରହ୍ମଚର୍ଯ୍ୟମାନଙ୍କର ଦମ୍ଭ ନାଶ କରୁଅଛି । ୨୮ ।

ସୀତାଙ୍କର ୪ ଶୃଙ୍ଗାର ରସ ୧ ମଜରକୁ ୨ ନାଶକରିବା ବିଷୟରେ ୩ ରସାୟନ ହୋଇ ତତ୍ପରେ ୫ ଉପାଦନ ସବୁ ରଚନା କରିବାରେ ଯତ୍ନ ହୋଇଥାଏ । ଯେଉଁ ବସ୍ତୁ ତାହା ଉପରୁ ହରଣ କରି ଉନ୍ନତ କୁଚ ୬ ଦାଡ଼ିମ୍ବ କରଗତ କରେ ଅର୍ଥାତ୍ ଦାଡ଼ିମ୍ବ ଫଳ ଜ୍ୱରରେ ପଥ୍ୟ ହୁଏ, ମୁଁ ଅଙ୍ଗ ଏବଂ ସେ ସୀତା ୭ ଗମନବେଳେ ଧୃତ ଲଗୁଡ଼ ଭଳି । ଦଣ୍ଡଚ୍ୟୁତ ଅଙ୍ଗ ଉପରେ ଏହାଛଡ଼ା ଆଉ ଦଣ୍ଡଅଛି କି ? ।୧୯।

ଏହି ସମୟରେ ମେଘ ଝର ଝର କରି ୧ ଅତି ଚଞ୍ଚଳରେ ବରଷିଲା । ୨ ଚଣ୍ଡ ରୂପେ ଘଟ ଘଟ ଧ୍ୱନ ୩ ପ୍ରକାଶ ହେଲା, ୪ ଭେକମାନେ ଭକ ଭକ ଶବ୍ଦକଲେ ଏବଂ ବକମାନେ ମଧ୍ୟ ୫ ଗର୍ବ କରି ୬ ଧ୍ୱନ କଲେ । ଏପରି ହୋଇ

ଲକ୍ଷଣ ଉଚାଇ ଯତନ,
ଉପଇନ୍ଦ୍ର ଭଞ୍ଜର ଏ ରସ ରଚନ ।୩୦।



## ପଞ୍ଚମ ଛାନ୍ଦ

ଜଗତ (୧) ତମସ (୨) ଘନ (୩) ଘନ (୪) ବଣ (୫) ସତ ଅହ (୬)
ଅନ୍ତ (୭) ଖର (୮) ଗରକର (୯) ଅସ୍ତ ପ୍ରତ୍ୟକ୍ଷ କରଇ ସହର
ଶତପତର (୧୦) । ୧ ।
ତରଳ ଚନ୍ଦ୍ର ଜପକର (୧୧) କରଇ ଉଦୟ କମଳଧର (୧୨) ।
ଧରଇ ପରସଦନ [୧୩] ଗତମନ (୧୪) ଜପଧବ (୧୫)
ତସକର (୧୬) । ୨ ।
କରଇ ରଚନ କଇରବ (୧) ବନପ୍ରସନ୍ନ (୨) ଚଞ୍ଚ (୩) ଅନ୍ତର (୪)
ତରସ୍ତ ହତକ (୫) ଏମନ୍ତ ପରର (୬) ତ୍ୟକତ ନଗଉଦର
(୭) ।୩।

---

୮ ଶ୍ରୀରାମଙ୍କର ୭ ଶୀଘ୍ର ୯ ମୋହ ହେଲା । ସ ନଭାଇ ଲକ୍ଷ୍ମଣ ତାଙ୍କୁ ସଚେତ କରାଇଲେ । ଏ ସୀତା ରାମଙ୍କର ବିଚ୍ଛେଦ ରସକୁ ଉପଇନ୍ଦ୍ର ଭଞ୍ଜ ରଚନା କଲେ ।୩୦।

---

## ପଞ୍ଚମ ଛାନ୍ଦର ଅର୍ଥ

୩ ନକ୍ଷତ୍ର ୪ ମେଘ ୫ ଯୋଗୁଁ ୧ ପୃଥିବୀ ୨ ଅନ୍ଧାର ହେଲା ୬ ଦିବସ ୯ ଶୀଘ୍ର ୭ ଶେଷ ହେଲା ଅର୍ଥାତ୍ ରାତ୍ର ହେଲା । ୧୦ ପଦ୍ମ ମୁଦ୍ରିତ ହୋଇ ୯ ସୂର୍ଯ୍ୟ ଅସ୍ତ ହେବାର ଜଣାଇଦେଲା । ମେଘ ଅନ୍ଧାରରେ ରାତ୍ରି ଦିନ ଜଣା ନ ଯିବାରୁ ପଦ୍ମ ଯୋଗେ ଜଣାଗଲା ।୧।

୧୨ ଚନ୍ଦ୍ର ଉଦୟ ହେଲାରୁ ୧୧ ଚନ୍ଦ୍ରକାନ୍ତମଣି ତରଳ ଗଲା । ୧୫ ଜାରପୁରୁଷ ଓ ୧୬ ଚୋରମାନଙ୍କର ୧୩ ପରଘରକୁ ଯିବାକୁ ମନ ଚଞ୍ଚଳ ହେଲା । ୨ ।

ଦର ଶବତ (୮) କତ, ଈଶ୍ୱର ଭବନର [୯] ଏକଜନ ଦର (୧୦)
ଦରଶନ କ୍ଷଣ ଏମନ୍ତ ସମସ୍ତ ସ୍ତମ୍ଭ ବଶ [୧୧] ଖରପର ।୪।

କମଳଧର (୧୩) କମଳଧର (୧୪) ବଚ ବଦନ ବରନ ଇନ (୧୫)
କମଳଜ (୧୭) ପଦତଳ ଅନବରତ ୧୮ ଦଇନ ।୫।

ଅସମଶର (୧୯) ଅସମ (୨୦) ଶରଣତ ଇଛଇ ତରଣତଳ ।
ବନ ସବନ ବନସଦନଜନ (୨୧) ବତ ଦଇବର ବଳ ।୬।

ପରମ କଷଣ (୧) ସହନ ଶୟନ ନବ ପଲ୍ଲବ ଉପର ।
ପରଭବକର (୨) ହତଚଇତନ (୨) ଏ ସ୍ୱପନ ତତପର ।୭।

---

୧ କୁମୁଦବନ ୨ ପ୍ରଫୁଲ୍ଲତାକୁ ରଚନା କଲା ଏବଂ ୩ ଚକ୍ରବାକ ପକ୍ଷୀଙ୍କର ୪ ବିଚ୍ଛେଦ କରାଇଲା । ୬ ପେଚକମାନଙ୍କର ୫ ଭ୍ରାନ୍ତିନାଶ କଲା । ସେମାନେ ୭ ଗିରିଗୁହା ତ୍ୟାଗକରି ବିହାର କଲେ ।୩।

୯ ଶିବାଳୟରେ ୮ ଶଙ୍ଖଧ୍ୱନି ହେଲା, ୧୧ ବିରହୀ ଜନମାନଙ୍କର ୧୦ ଉପୁଜାତ ହେଲା, ଏହିଭଳି ବର୍ଷାକାଳର ମଧ୍ୟରାତ୍ରି ଦର୍ଶନ କରିବାରୁ ଶ୍ରୀରାମଙ୍କର ୧୧ ସ୍ତମ୍ଭ ସାତ୍ତ୍ୱିକ ଜାତହେଲା ।୪।

୧୪ ଚନ୍ଦ୍ର ଭଳି ୧୫ ଶ୍ରେଷ୍ଠ ବଦନ ୧୨ ଶ୍ରୀରାମ ମେଘପ୍ରାପ୍ତ କାନ୍ତିବିଶିଷ୍ଟ ତାଙ୍କ ପାଦ ୧୬ ପଦ୍ମରୁ ଯେଉଁ ୧୭ ବିଧାତା ଜନ୍ମଗ୍ରହଣ କରିଛନ୍ତି ୧୮ ସେ ସର୍ବଦା ଦୈନ୍ୟ ହେଉଛନ୍ତି ।

୧୯ କନ୍ଦର୍ପ ରୂପକୁ ୨୦ ସମାନ ନ ହେବାରୁ ଯାହାଙ୍କର ଚରଣତଳେ ଶରଣ ପଶିବାକୁ ଇଚ୍ଛାକଲେ ଏଭଳି ଯେଉଁ ରାମ ସେ ଦୈବଯୋଗରୁ ତପସ୍ୱୀ ପରି ଅରଣ୍ୟରେ ବାସ କରିଅଛନ୍ତି । ୬ ।

ଶ୍ରୀରାମଙ୍କୁ କଅଁଳପତ୍ର ଶଯ୍ୟାରେ ଶୋଇବାକୁ ୧° କଷ୍ଟ ହେଲା; ଏହି ସମୟରେ ୩ ନଷ୍ଟ ଚେତନା ୨ ପରାଭବ କଲାରୁ ଶୀଘ୍ର ସ୍ୱପ୍ନ ଦେଖିଲେ ।୭।

ଧନ ଇଚ୍ଛକ (୪) ଜନବତ ଚପଳ (୫) ହରଷତ ବରଧନ ।
ଧନଦ ପଦ (୬) ଇତର (୭) କରଣର ନଗ (୮) ଉପଗତ
ଧନ (୯) । ୮ ।

ଧର (୧୦) ସଂଜ୍ଞତ ଉରଜ (୧୧) ପ୍ରତ୍ୟୁଃ (୧୨) ଏପନ
ବସନଧର । ୧୩ ।

ତରଳ (୧୪) ତର (୧୫) ନୟନଶର, ନ ରଖଲ ଦମ୍ଭ (୧୬)
ବଳତର । ୧୭ ।

ଜଳ କଲଶ (୧୮) ପ୍ରକଟ (୧୯) ଚନ୍ଦ୍ରବତ ସହଜ ମହଇଚ୍ଛକ (୨୦)
ଚଳପ ଅନ୍ତର (୨୧) ଧରଣ ଉଦ୍ୟମ ନ ପଡ଼ଇ କରତଳ
(୨୨) । ୧୦ ।

ଚନମନ (୧) ବଶ ଚକ୍ଷତ ଦର୍ଶନ (୨) ସ୍ୱପନ ଭଙ୍ଗ (୩) ତକ୍ଷଣ ।
ଥନ ଥନ କର (୪) ଢନଜ (୫) ନୟନ ରସ ବଚନ କଥନ
(୬) । ୧୧ ।

---

୬ କୁବେରପଦ ୭ ତୁଚ୍ଛକାରିଣୀ ୯ ସୀତାଦେବୀ ମାଲ୍ୟବନ୍ତ ୮ ପର୍ବତରେ ପ୍ରବେଶ ହୋଇଅଛନ୍ତି । ଏହେତୁ ୪ ଧନାଭିଳାଷୀ ଲୋକଭଳି ୫ ଚଞ୍ଚଳ ହୋଇ ଆନନ୍ଦ ବର୍ଦ୍ଧନ ହେଲା । ୮ ।

ସୀତାଙ୍କର ୧୦ ପର୍ବତ ଭଳି ଉଚ୍ଚ ୧୧ କୁଚ ୧୩ ବସ୍ତ୍ରରେ ଆବୃତ ହୋଇଥିବାର ୧୨ ଦେଖିଲେ ୧୫ ଅତିଶୟ ୧୪ ଚଞ୍ଚଳ ନୟନଶର ୧୬ ଧୈର୍ଯ୍ୟରୂପ ୧୭ ସାଞ୍ଜୁକୁ ଦୂରକରି ଦେଲା । ୯ ।

ପାଣି ୧୮ ମାଠିଆରେ ଚନ୍ଦ୍ର ୧୯ ଦେଖାଗଲା ଭଳି ସହଜେ ସୀତାଦେବୀ ପର୍ବତ ଉପରେ ଅତିଶୟ ୨୦ ଖ୍ୟାତା ହେବେ; ଏଣୁ ଶ୍ରୀରାମ ୨୧ ଶଯ୍ୟା ଛାଡ଼ିହୋଇ ସୀତାଙ୍କୁ ଧରିବାକୁ ଯିବାରୁ ସେ ୨୨ ରାମଙ୍କ ହସ୍ତରେ ପଡ଼ିଲେ ନାହିଁ । ୧୦ ।

ସ୍ୱପ୍ନରେ ସୀତା ୨ ଚତ୍ୱର ଦେଖି ୧ ଚଞ୍ଚଳତା ବଶ ହେବାରୁ ୩ ସ୍ୱପ୍ନ ଭଙ୍ଗ ଗଲା, ପଦ୍ମନେତ୍ରକୁ ଲୋତକ ପୂର୍ଣ୍ଣକରି ୬ ରସବିଶିଷ୍ଟ କଥାମାନ କହିଲେ । ୧୧ ।

ନ ଧର ଅପରକଣ୍ଠ (୭) ପରକଣ୍ଠ କପଟ ରଙ୍ଗ (୮) ଅଧର ।
ମମଲପନ (୯) ସଙ୍ଗକର (୧୦) ଅମର, ରସଦ (୧୧) ଭଙ୍ଗ (୧୨)
ଅଧର । ।୧୨।
ନ ବନ୍ଧ, ନ ବନ୍ଧ, ମନ୍ଧ ଅମରଷ (୧୩) ଶରଣ ଜନମ ଗ୍ନନ (୧୪)
ଈଶ୍ବର ସମ୍ପଦ ଲଭ୍ୟ (୧୫) ଦଣ୍ଡକର ନ କର ଜନ ମଜନ
(୧୬) ।୧୩।
ବଶ ନ କରଇ ଏମନ୍ତ ସହଜ ସତ କମଳଜ ପଦ (୧୭) ।
ଅଲକ୍ତ (୧୮) ତଳତଳଜଡ଼ନ ଇଚ୍ଛଇ ତବ କମଳଜ ପଦ (୧୯)
।୧୪।
ତରଳକର, (୨୦) ତରଳ (୨୧) କରକଣ୍ଠ (୨୨) ଉରଜ
କରରଞ୍ଜନ
ଚନ୍ଦ୍ର ଦରପଣ (୨୩) ଚନ୍ଦ୍ର (୨୪) ଦରପଣ ହରଷ ହର ଲପନ
(୨୫) ।୧୫।

---

ହେ ସୀତେ । ତୁ ଯାହା ଦେଖାଦେଇ ପୁଣି ୭ ଦେଖା ଦେଉନାହୁଁ, ସେ ଭଳି କର ନାହିଁ । ତୁ ମୋ ସଙ୍ଗେ ଯେଉଁ କପଟ ଲୀଳା କରୁଅଛୁ ତାହା ନ କର । ତୋର ୧୧ ଅମୃତ ପ୍ରାପ୍ତ ରଙ୍ଗାଧର ୯ ମୋ ମୁଖ ସହିତ ୧୦ ସଂଯୋଗ କର । ୧୨ ।

ହେ ସୀତେ ! ମୁଁ ତୁମ୍ଭର ଶରଣ ଜନ; ୧୬ ନବାକ ହୋଇ ରହୁଛୁ, ୧୩ ତୁ ମହାକ୍ରୋଧକୁ ବହନ ନ କର । ୧୫ ଅର୍ଦ୍ଧାଙ୍ଗ ଦାନକର ଏ ଜନ୍ମକୁ ୧୪ ଉଣାକର ।୧୩।

ମୋହର ମନକୁ ୧୭ ବ୍ରହ୍ମାପଦ ବଶ କରି ନ ପାରେ ଏହା ସତ୍ୟ, କିନ୍ତୁ ତୁମ୍ଭର ୧୯ ପାଦପଦ୍ମରେ ୧୮ ଅଳତା ପରି ଜଡ଼ିତ ହୋଇ ରହିବାକୁ ଇଚ୍ଛା କରଇ । ୧୪ ।

ତୁମ୍ଭର ୨୦ ତରଳକାନ୍ତି ୨୧ ହାରର ମଧ୍ୟମଣି ୨୨ କୋକିଳ କଣ୍ଠ ଏବଂ ସ୍ତନଦ୍ୱୟ ଉପରେ ରଞ୍ଜିତ ହେଉଅଛୁ । ହେ ସୀତେ! ତୁମ୍ଭର ଯେଉଁ ୨୫ ମୁଖ ସେ ଚନ୍ଦ୍ରକୁ ୨୩ ଅଲକ୍ଷଣ (ନ୍ୟୂନ) କରି ଦେଇଅଛୁ ଏବଂ ୨୪ ସୁବର୍ଣ୍ଣ ଦର୍ପଣରେ ଦର୍ପନାଶ କରୁଅଛୁ । ୧୫ ।

ମନମଥ (୧) ମନମଥନ (୨) କରଇ କର ବଚନ କଥନ ।
ରସକଳପ, ରସକଳପ (୩) ଜନ, ଜଗତ ମଧ୍ୟ ରଞ୍ଜନ ।୧୬।
ହରପରଶର (୪) ହର ପରଶର (୫) କଷଣ ଚପୁ (୬) ରଭସ (୭)
ପରକଟ (୮) କର ପରକଟକର (୯) ଅରଷ ରଷଣ ଯଶ ।୧୭।
ସମ ଶଣଧର (୧୦) ସମ ଶଣଧର (୧୧) ହସ କର ଉବସୁକ (୧୨)
ରଣରଣ (୧୩) କରରଣ ରଣକର (୧୪) ରଣରପଦ କଟକ
(୧୫)। ୧୮ ।
ମଞ୍ଜୁ କଳକଣ୍ଠ (୧୬) ମତ (୧୭) କଳକଣ୍ଠ (୧୮) ବଚନ କର
ରଚନ ।
ଦଣ ନଖର (୧୯) ଦଶନ (୨୦) ଖରକ୍ଷତ (୨୧) ସଭସ୍ଥ ନକର
ମନା ।୧୯।
ନବ (୧) କ ବରଷ (୨) ନବକ (୩) ବରଷ ରସ ଦଉ କର
ଜବ (୪)

---

ଏଭଳି ଯେଉଁ ମୁଖ ଭଙ୍ଗିରେ କଥା କହୁ ୧ କନ୍ଦର୍ପ ମନକୁ ୨ ମନ୍ଥୁଅଛୁ, ତୁ ତ ରସ କଳ୍ପଲତା, ଜଗତ ମଧ୍ୟରେ ମନୋହର ହୋଇଅଛୁ ୩ ଏବେ ଆଦ୍ୟରସ କଳ୍ପନା କର । ୧୬ ।

୪ କନ୍ଦର୍ପ ଶରର ୬ କଷ୍ଟସବୁ ୨ ବେଗେ ୫ ସ୍ପର୍ଶ (ଆଲିଙ୍ଗନ) ଦାନ-ପୂର୍ବକ ହରଣକରି ଅରଷ ରଷଣ ଯଶ ୯ ଲଙ୍କାପୁରରେ ୮ ପ୍ରକାଶ କର । ୧୭ ।

୧୦ କର୍ପୂର ଓ ୧୧ ଚନ୍ଦ୍ର ତୁଲ୍ୟ ହାସ ୧୨ ପ୍ରକାଶ କର ୧୩ କନ୍ଦର୍ପର ୧୪ ରତ୍ତ ଯୁଦ୍ଧରେ ୧୫ ପାଦକଟକର ରଣ ରଣ ଶବ୍ଦ କର । ୧୮ ।

୧୬ କଉକୋକିଳର କଣ୍ଠ ୧୭ ତୁଳନା ୧୮ ତୁମ୍ଭର ସୁମଧୁର କଣ୍ଠରେ ବଚନ ରଚନା କରି କହ ଏବଂ ମୋତେ ତୁମ୍ଭର ୧୯ ଦଶନଖ ଏବଂ ୨୦ଦାନ୍ତ-ଦ୍ୱାରା ଚଞ୍ଚଳ ୨୧ ଘାତକର, ଆଉ ମୋତେ ଘୃଣା କରଅ ନାହିଁ ।୧୯।

୩ ଲବନାୟକ ସମସ୍ତ ଏକ ବର୍ଷପରି ଲାଗୁଅଛୁ, ଏବେ ୧ ନୂଆକରି ୨ କେଶ ବନ୍ୟାଶ କରି ଶୃଙ୍ଗାରରସ ୪ ଶୀଘ୍ର ଦାନ କର, ୬ ତୁ ମୋହଠାରୁ ଅନ୍ତର

ଅନ୍ତରଗତର (୫) ଅନ୍ତର ଗତର (୬) କଷ୍ଟ ଅନଳ (୭) ପ୍ରଭବ
(୮) ।୨୦।

ଅପସରତ (୯) ଅପସର (୧୦) ତବର (୧୧) ଏ ଉର ଅଟଇ
ଧନ ।

ଦଣ୍ଡନକର (୧୨) ଦଣ୍ଡନରକମଠ (୧୩) ଏ ଅନ୍ତର (୧୪) ଘନ
ଘନ (୧୫)

ହରଷତ୍ର (୧୬) ହର, ଶରଣଛ, ହର (୧୭) ମମତବ ପଦନତ
(୧୮) ।

ଅଧମଜନ, (୧୯) ଅଧମ ଜନ କଷ୍ଟକର (୨୦) ଅର୍ଣ୍ଣବର (୨୧)
ସତ ।୨୨।

ଏ କପଟକର (୨୨) ଏକପଟକର (୨୩) ଉର ଉପର (୨୪)
ବଦନ ।

ପଲକ ପଲଙ୍କ ଅନ୍ତର ନ ସହ ସହଜ ତବ ଏସନ ।୨୩।

---

ହୋଇଯିବାରୁ ୫ ମୋ ମନ ୬ କଷ୍ଟରୂପ ଅଗ୍ନି ଦ୍ୱାରା ୮ ସନ୍ତପ୍ତ ହେଉଛି । ୨୦ ।

ହେ ଧନ ! ମୋର ଯେଉଁ ବକ୍ଷସ୍ଥଳ ୧୧ ସେ ତୋହର ୧୦ ଅପସର (ତକଅା) ଅଟଇ । ତହିଁକି ୯ ଆଉଜ ଏବଂ ୧୪ ଏ ହୃଦ {ଅବସ୍ଥାକୁ ୧୫ ଶୀଘ୍ର ଶୀଘ୍ର ୧୨ ଦଣ୍ଡଦଅ, ଏକଦଣ୍ଡ ମାତ୍ର ୧୩ ବିଳମ୍ବ ନ କର । ୨୧ ।

ମୁଁ ତୁମ୍ଭର ୧୮ ପାଦତଳେ ନମ୍ର ହୋଇ ଶରଣ ପଶୁଅଛି । ମୋହର ୧୬ ଭୟ ହର୍ଷ ଚିତ୍ତରେ ହରଣ କର । ମୁଁ ଅଧମଲୋକ ଅଟଇ ଏବଂ ୨୦ ଶ୍ରେଷ୍ଠ କଷ୍ଟ ୨୧ ସମୁଦ୍ରର ତଳ ପର୍ଯ୍ୟନ୍ତ ୧୯ ବୁଡ଼ିଯାଉଛି । ୨୨ ।

ହେ ସୀତେ ! ତୁମ୍ଭେ ଯେଉଁ ୨୨ କପଟ କରୁଛ ତାହା ନ କର, ଏବେ ମୋହର ୨୪ ବକ୍ଷସ୍ଥଳରେ ୨୩ ଏକ ଶଯ୍ୟା ରଚନା କର । ସହଜରେ ତୁମ୍ଭେ ଏହିପରି ପଲଙ୍କରୁ ଏକପଲକ ଅନ୍ତର କଷ୍ଟ ସହି ନ ପାର ।୨୩।

୨ ଦୃଷ୍ଟ ୩ ମଦନରାଜ ୪ ଦଣ୍ଡ ଦେଉଅଛି । ୧ ଏ ଅପଶକୁ ଖଣ୍ଡନ କର । ହେ ସୀତେ ! ଏହାକୁ ଏପରି ୫ ଦଣ୍ଡ ଦେବାଲାଗି ୬ ମନକୁ ବଳାଅ ।

ଖଣ୍ଡ ଏ ଅଯଶ (୧) ଜଡଣ୍ଡ (୨) ମଦନ ଦଣ୍ଡଧର, (୩)
ବଣ୍ଡପ୍ରଦ (୪) ।
ଏମନ୍ତ ଦଣ୍ଡର (୫) ଧନ ପରବତ (୬) ସ୍ତନ ପରବତ ଲଦ ।୨୪।
କରତ (୭) କରଜ (୮) କରଢ ଶବର (୯) କର, ତ କର
(୧୦) ବନ୍ଧନ
ଝଁଟକ, ଝଁଟକ (୧୧) ଛଟକ (୧୨) ନୟନ ଅଟକ (୧୩) ରଖତ
ଧନ ।୨୫।
ପରମ ରମ୍ୟସ୍ଥଳ ନଗ (୧୪)ଅଜନ(୧୫)ଜନମ କରଇ ସ୍ମର(୧୬)
ଧରଇ କଳରବ,(୧୭)କଳରବତ(୧୮)ରତ ସମସ୍ମର ସ୍ମର ।୨୬।
ଚହଟଇ ସତ କଦମ୍ବ (୧୯) ଗନ୍ଧ ପବନ ବଣର ।
ରଚନ ପଲ୍ଲବ ଶୟନ (୨୦) ଶୟନ କର ସମ ସଙ୍ଗତର ।୨୭।
ଶଶଲକ୍ଷଣ (୨୧) ପଞ୍ଚ ମନ (୨୨) ଏସନ ଛନ୍ଦ କହଇ ଲକ୍ଷ୍ମଣ ।
ଶଶଲକ୍ଷଣ (୨୩) ଧରଣେର (୨୪) ନ କର ସନ୍ତୁର୍ଦ୍ଧ୍ୟ କର
ଚଲ୍ଲକ୍ଷଣ । ୨୮ ।

---

ତୁମ୍ଭର ସ୍ତନ ପର୍ବତ ଲଦ ଦଅ ଅର୍ଥାତ୍ କାମଦଣ୍ଡରୁ ଉଦ୍ଧାର କରି ମୋତେ ସ୍ତନପର୍ବତ ଲଦବାଦ୍ୱାରା ତୁମ୍ଭେ ଦଣ୍ଡ ବିଧାନକର ।୨୪।

ରେ ଧନ ୮ ନଖ ୭ କରତରେ କର୍ତ୍ତନ କରିଦଅ । ୯ ଏ ଗାବଶୂନ୍ୟ ଶରୀର ୧୦ ହାତ ଭୁଜରେ ବାନ୍ଧ, ପୁଣି ୧୧ ପ୍ରକାଶ ହୁଅ । ମୋହର ୧୨ ଚଞ୍ଚଳ ନୟନକୁ ୧୩ ଅବରୋଧ କର । ୨୫ ।

୧୪ ଏହି ପର୍ବତ ଅତିଶୟ ରମ୍ୟସ୍ଥଳ ଏବଂ ୧୫ ନିର୍ଜ୍ଜନ ହୋଇ ୧୬ କାମକୁ ଜାତ କରାଉଅଛି । ୧୭ । ପୁଣି କପୋତ ମୟୂରାଦିଙ୍କର କଳରବ (ମଧୁର ସ୍ୱନ) ଶୁଣାଯିବାରୁ ଶୃଙ୍ଗାର ସମୟର ୧୮ ଶବ୍ଦ ଭଳି ଜଣାଯାଉଅଛି । । ୨୬ ।

କଦମ୍ବ ୧୯ ସମ୍ଭୂତର ଗନ୍ଧ ପବନ ହେଉଛି ଚହଟଇ । ୨୦ । ପତ୍ରଶଯ୍ୟା ପ୍ରସ୍ତୁତ କରି ମୋ ସଙ୍ଗରେ ଶୟନ କର । ୨୭ ।

୨୧ ଅର୍ଦ୍ଧ ଚନ୍ଦ୍ର ଚିହ୍ନ ଅଛି ଏଭଳି ଯେଉଁ ଶ୍ରୀରାମ ୨୨ ସେ ମନରେ ଏଭଳି ଭାବନା କରି ରୁନ୍ଧା ହେବାରୁ ଲକ୍ଷ୍ମଣ କହିଲେ ୨୩ ଚନ୍ଦ୍ରକୁ ୨୪ ଧରିବା ଲାଗି

ମକର ଧ୍ୱଜ (୧) ପର (୨) ଦଳନ (୩) କରସ୍ୱପନ ସତ ନ
ମଣ (୪) ।

ମକର (୫) ଧ୍ୱଜ (୬) ମଧ୍ୟଗତ ଜନ (୭) ଏ ସ୍ତବ କରଇ
ଶ୍ରବଣ । ୨୯ ।

ଅମରସପତ୍ନ (୮) ମଦ ଦଶକନ୍ଧ (୯) ହରଣର ଲଙ୍କ ଗତ ।

ଅମରଷ (୧୦) ରଣକର ତବପର (୧୧) ଭଜ ନନ୍ଦନ (୧୨)
ସଙ୍ଗତ । ୩୦ ।

ବରଜ (୧୩) ବର (୧୪) ବରଦ (୧୫) ଏ ଉଦନ୍ତ (୧୬)
ଶ୍ରବଣ କ୍ଷଣ ପ୍ରସନ୍ନ ।

ବରଜ (୧୭) ବର ଦତ୍ତକ (୧୮) ତତପର ଅନ୍ୟ ସ୍ଥଳର
ଗମନ । ୩୧ ।

---

୨୫ ହାତ ଉପରକୁ ନ ବଢ଼ାଅ । ଯାହା ସୀତା ବୋଲି କହୁଅଛ ଆକାଶରେ ଉଦିତ ଚନ୍ଦ୍ରକୁ ହାତ ବଢ଼ାଇଲେ ଧରି ପାରିବ କି ? । ୨୮ ।

୧ କନ୍ଦର୍ପ ୨ ଶତ୍ରୁତା କରି ୩ ମର୍ଦ୍ଦନ କରୁଛି, ଏ ସ୍ୱପ୍ନକୁ ସତ ବୋଲି ମନରେ ନ କର ୫ କୁମ୍ଭୀରର ସ୍ଥାନ ୬ ସମୁଦ୍ର ୭ ମଧ୍ୟ (ଲଙ୍କା)ରେ ଥିବା ସୀତା ଦେବୀ ଏହି ସ୍ତୁତି ଶ୍ରବଣ କରୁଅଛନ୍ତି କି ? ।୨୯।

୮ ଦେବଶତ୍ରୁ ମଦମତ୍ତ ୯ ରାବଣ ସ୍ୱେଚ୍ଛାଇ ନେବାରୁ ସୀତା ଲଙ୍କାକୁ ଗଲେ ଏବେ ୧୧ ସୁଗ୍ରୀବ ସଙ୍ଗରେ ୧୧ କୁମ୍ଭର ଶତ୍ରୁ ରାବଣ ସନ୍ତତ ୧୦ ସକ୍ରୋଧରେ ଯୁଦ୍ଧକର ।୩୦।

୧୫ ବରଦାତା ଅନନ୍ତ ଏବଂ ୧୩ ଶ୍ରେଷ୍ଠ ଜନ୍ମ ଧାରଣ କରିଅଛନ୍ତି, ଏପରି ସେହିଁ ଦେବତାମାନେ, ସେମାନଙ୍କଠାରୁ ୧୪ ଶ୍ରେଷ୍ଠ ଅନନ୍ତ ଯେଉଁ ରାମଚନ୍ଦ୍ର, ସେ ୧୬ ବାର୍ତ୍ତା ଶୁଣି ପ୍ରସନ୍ନ ହେଲେ ଏବଂ ୧୭ ଗୋପାଳକୁ ବର ୧୮ ଦାନକରି ଅନ୍ୟ ସ୍ଥାନକୁ ଗଲେ । ୩୧ ।

ଉପଇନ୍ଦ୍ର (୧୧) ଭଞ୍ଜ (୨୦) ଭବ ଭୟଚୟ (୨୧) ରଖ ସନ୍ତତ
ଶରଣ ।

ଉପଇନ୍ଦ୍ର ଭଞ୍ଜ ଭଜଇ ଅମଳ(୨୨)ରଙ୍ଗକମଳ(୨୩)ଚରଣ ।୩୨।

—o—

## ଷଷ୍ଠ ଛାନ୍ଦ

ରାଗ-ଚକ୍ରକେଳୀ

ଅବରଜ (୧) ବଚନର ମଉନ
ଏ ସମୟର ବହଇ ପବନ । ୧ ।
ଖରପର (୨) କଥନ ଏ ଜଉର ।
ତବ ତନୟ (୩) ମମ ସହଚର । ୨ ।
ମମ ସହଜ ସଦୟ (୪) ଅରହ (୬) ।
ନ ବହ ଏ ଅବୟବ (୭) ନ ଦହ । ୩ ।

---

ଏପରି ଯେଉଁ ପ୍ରଭୁ ରାମଚନ୍ଦ୍ର ତାଙ୍କର ୨୨ ନର୍ମଳ ୨୩ ରକ୍ତ ପଦ୍ମ ଚରଣ ଉପେନ୍ଦ୍ର ଭଞ୍ଜ ଭଜଇ । ୧୯ । ହେ ଭଗବାନ ! ମୋର ୨୧ ଭବଭୟ ସବୁ ଭାଙ୍ଗି ଦେଇ ସର୍ବଦା ଶରଣ ରଖ । ୩୨ ।

———

## ଷଷ୍ଠ ଛାନ୍ଦର ଅର୍ଥ

ରାମଚନ୍ଦ୍ର ଲକ୍ଷ୍ମଣଙ୍କର ୧ କଥା ଶୁଣି ତୁନ ହେଲେ । ସେହି ସମୟରେ ପବନ ବହିବାକୁ ଆରମ୍ଭ ହେଲା । ୧ ।

୨ କ୍ଷୀରାମ ପବନକୁ କହିଲେ ୩ ତୁମ୍ଭର ପୁଅ ହନୁମାନ ଆମ୍ଭର ୪ ଦୂତ ଅଟଇ । ୨ ।

ସହଜରେ ମୋତେ କେହି ୫ ଦୟା କରିବାକୁ ଯୋଗ୍ୟ ୬ ହେଉ ନାହାନ୍ତି । ତୁମ୍ଭେ ପ୍ରବାହିତ ନ ହୁଅ ଏବଂ ମୋହର ୭ ଦେହ ଦଗ୍ଧ ନ କର । ୩ ।

ଉପଗତ (୮) ଏସନ ଅସମସ୍ତୁ ।
ମଳୟଜ (୯) ଦହନ ଧନଞ୍ଜୟ (୧୦) । ୪ ।
ସତ କରମ କରଇ ସକଳ ।
ହର ଅଶନ (୨) କରକ ଗରଳ (୩) । ୫ ।
ମଳୟଜ (୪) ନଗଇ ଗରଧର (୫) ।
ଶଶ (୬) ବନ୍ଧ ଧବଳ କର (୭) ଉର ।୬।
ତଦବତ (୮) ମମ ଧନ (୯) କରମ ।
ନରଧବ (୧୦) ଭବନର ଜନମ ।୭।
ଯହିଁ ନର (୧୧) ସଘନ (୧୨) ଅପଘନ (୧୩) ।
ରଜ (୧୪) ସମଳ ବଣ (୧୫) ଅଯଠନ (୧୬) ।୮।
ମନ ରତନ ଖଣ୍ଡ ନ ହରଇ ।୧୭।
ନବ ପଲ୍ଲବ (୧୮) ଶୟନ କରଇ ।୯।
ଭୂର ଜନମ (୧୯) ହସ ଢ଼ଳଇ ।
ଘନ ଜଠର ଅନଳ ଜଳଇ । ୧୦ ।

---

ଅସମସ୍ତୁ ୮ ଉପସ୍ଥିତ ହେବାରୁ ୯ ଚନ୍ଦନ ୧୦ ଅଗ୍ନି ଭଳି ଦଗ୍ଧ କରୁଅଛି । ୪ ।

କର୍ମ ସବୁ କରଇ ଏହା ସତ୍ୟ ଏବଂ ସେହି ହେତୁରୁ ୧ ମହାଦେବ ୩ ବିଷ ୨ ଭୋଜନ କରିଥିଲେ । ୫ ।

ପୁଣି ୪ ଚନ୍ଦନକୁ ୪ ସର୍ପ ଜଗିଥାଏ । ୭ ଚନ୍ଦ୍ର ବକ୍ଷସ୍ଥଳରେ ୬ ଶଶାଙ୍କୁ ବନ୍ଧି ଅଛନ୍ତି । ୬ ।

ମୋର ୯ ସୀତାଙ୍କର କପାଳ ମଧ୍ୟ ୮ ସେହିପରି ୧୦ ରାଜଗୃହରେ ଜନ୍ମ ହେଲେ ସୁଦ୍ଧା କଅଣ ହେବ । ୭ ।

ଏଭଳି ଯେ ସୀତା ତାଙ୍କର ୧୧ ଯେଉଁ ନିର୍ମଳ ୧୩ଅଙ୍ଗ ୧୨ ସାନ୍ଦ୍ର ୧୪ ଧୂଳିଦ୍ୱାରା ୧୫ ମଳିଆ ହୋଇ ୧୬ ଅସୁନ୍ଦର ଦିଶୁଥିବ ।୮।

ରତ୍ନଖଣ୍ଡ ସୀତାଙ୍କର ମନକୁ ୧୭ ହରଣ କରେ ନାହିଁ । ଏବେ ୧୮ ନୂଆ-ପତ୍ରରେ ଶୟନ କରୁଥିବେ । ୯ ।

୧୯ ଭସ୍ମଜାତ ଏବଂ ୨୦ ହସ ନାଶ ହୋଇଅଛି, ୨୧ ଆଜି ଜଠରରେ ଅଗ୍ନି ଜଳୁଅଛି । ୧୦ ।

କରଇ ଏ କବଳ (୧) ଘନ ଘନ (୨)
ନଭ (୩) ଶଶଧର (୪) ନଗ (୫) ତପନ (୬) ।୧୧।

ଏ ସମତ (୭) ଛଇଳ ରତନର (୮)
କଚ (୯) ଲପନ (୧୦) ଉରଜ (୧୧) ଅଧର (୧୨) ।୧୨।
କହ, ଏଥଉପର (୧୩) କର ଘନ (୧୪) ।
ତବ ସମସ୍ତ ବସନ ଯତନ ୧୫ (୧୩)

ବସ ବଲ୍ଲଭ (୧୬) ଡହର (୧୭) ତପଳ (୧୮)
ହତ ଏ ରସ କରମ ଅବଳ । (୧୪)
ଏଥ ଉପର ଏବର ପତନ (୧୯) ।
ଶଣ (୨୦) ସମ ଧନର (୨୧) ଅପଘନ (୨୨) ।୧୫।
ନଖ (୧) ପଦ ଅଳପ ନ ସହଇ ।
ଖର (୨) ଶର (୩) ମଦନ ବରଷଇ । ୧୬ ।

---

ଏ ମେଘ ୨ ଅତି ବ୍ୟଗ୍ର ହୋଇ ୩ ଆକାଶ, ୪ ଚନ୍ଦ୍ର, ୫ ପର୍ବତ,୬ ସୂର୍ଯ୍ୟ ଏମାନଙ୍କୁ ୧ ଗ୍ରାସ କରଇ ।୧୧।

୮ ସୀତାଙ୍କର ୯ କେଶ, ୧୦ ମୁଖ, ୧୧ ସ୍ତନ, ୧୨ ଓଷ୍ଠ ଯଥାକ୍ରମେ ଆକାଶ; ଚନ୍ଦ୍ରାଦର, ତୁଲ୍ୟ ଥିବାରୁ ଭ୍ରମରେ ମେଘ ତୁମ୍ଭେ ସୀତାଙ୍କୁ ଗ୍ରାସ କଲ କି ? (୧୨)

୧୪ ହେ ମେଘ । ତୁମ୍ଭେ ଯାଇଁ ସୀତାଙ୍କୁ କହିବ କି, ମେଘ ହେଲାବେଳେ ୧୩ କେଶ, ଅଧର, ଉରଜ ୧୫ ଯତ୍ନକରି ବସ୍ତ୍ର ଦ୍ଵାରା ଢାଙ୍କିବ । ୧୩ ।

ଏବଂ ୧୬ ସ୍ୱାମୀ ୧୭ କୋଳରେ ୧୮ ଶୀଘ୍ର ବସ । ଏବେ କର୍ମ ଅବଳରୁ ଏହି ରସ ନାଶ ହେଲା । ୧୪ ।

ପୁଣି ଏହା ଉପରେ ୧୯ ଏ ଭସ୍ମ ପଡ଼ିଲା,୨୧ ସୀତାଙ୍କ ଦେହ ୨୦ଶଣ ପଣ୍ଡୁ ଭଳି ହେଲା । ୧୫ ।

ଯେ କି ୧ ନଖାଘାତ ଅଳ୍ପମାତ୍ର ସହି ନ ପାରେ, ଏବେ ତାହା ଉପରେ କନ୍ଦର୍ପ ୨ ତୀକ୍ଷ୍ଣ ୩ ବାଣ ବରଷୁ ଅଛି ।୧୬।

କହ ଭଜନ (୪) କର ହର ହର (୫) ।
ବର (୬) ଜନମ ମଚ ମଦନର । ୨ ।
ଏଥ ଉପର ପତନ ଏ ଦର ।
ନ ସହଇ ବନଜକର, (୭) କର (୮) ।୧୮।
ମହ ଉଚ୍ଛନ୍ନ ବହନ ଜନନ (୯) ।
ଅନବରଚ (୧୦) କରଇ ବହନ (୧୧) ।୧୯।
ଘନରସର (୧୨) ହତ ନ ଭଜଇ ।
ସତ ମମ ଘନରସ (୧୩) ଇଛଇ ।୨୦।
କହ ବଲ୍ଲଭ (୧୪) କରଇ ଗମନ ।
ଘଟ [୧୫] ରଖ ନ କରଇ ଉନ୍ମନ । (୧୬) ।୨୧।
କରକଣ [୧] ପଥର ମମ ଉର (୨)
ନ ପଡ଼ଇ ଚଡ଼କ [୩] ଏ ଉପର ।୨୨।
ଧନ ଏସନ କଷଣ (୪) ସହଇ ।
ଘଟ (୫) ରହଇ ଜପନ (୬) କରଇ । ୨୩ ।

---

ହେ ମେଘ ! ପୁଣି କହିବ ଯେ ୫ ଶିବ ଶିବ ବୋଲି ୪ ସ୍ତୁତି କରୁଥିବ, ଏଥିରେ କନ୍ଦର୍ପ ମନରେ ୬ ଉପୁଜାତ ହୁଏ ।୧୭।

ଏହା ଉପରେ ପୁଣି ଏ ଉପ୍ପ ପଡ଼ିଲ ୭ ସୂର୍ଯ୍ୟ ୮ କିରଣ ଯେ ସହି ନ ପାରେ । ୧୮ ।

ତାଙ୍କୁ ମହା ଉଚ୍ଛନାଗିୁ ୯ ଜାତହୋଇ ୧୦ ସର୍ବଦା ୧୧ ଦଗ୍ଧ କରୁଅଛୁ ।୧୯।

ତାହା ୧୨ ଜଳରେ ନାଶ ହେଉନାହିଁ ସତ୍ୟ କିନ୍ତୁ ମୋହର ୧୩ ଶୃଙ୍ଗାର ରସ ଇଚ୍ଛା କରଇ । ୨୦ ।

ହେ ମେଘ ! ସୀତାଙ୍କୁ କହିବ ତୁମ୍ଭ ୧୪ ସ୍ୱାମୀ ଆସୁଅଛନ୍ତି, ୧୫ ଶରୀରକୁ ରକ୍ଷାକର ୧୬ ମନ ଉଣା ନ କର । ୨୧ ।

୨ ମୋହର ହୃଦ ପଥର ଭଳି ୧ କଠିନ ଏହା ଉପରେ ଯାହା ୩ ବଜ୍ର ପଡ଼ୁ ନାହିଁ । ୨୨ ।

ନବସପତ (୬) ବରଷ ବୟସ ।
ଏକ ଅବୟବ ରସ (୮) ବରଷ । ୨୪ ।
ମହ ସଉରଭ (୯) କର ସହଜ ।
ଷଟପଦ (୧୦) ନ ଇଛଇ ବନଜ (୧୦) ।୨୫।
ଦସ ଝଂଟକ ଅପଲକ କର ।
ଏ ସତ ନଉସଦନ [୧୨] ଗଣର ।୨୬।
ଏସନକ ନୟନ ବଡ଼ପଣ ।
କତ ଉପୂର [୧୩) କଜ୍ଜ୍ବଳ ଶରଣ । ୨୭ ।
ବଶ କରଇ ଜଗତର ଜନ (୧) ।
ଧନ ରସ ରମ୍ୟକର (୨) ସଦନ (୩) । ୨୮ ।
ସତ (୪) ବନଇ ଏସନ ଜନର ।
କଷଣ ତ [୫] ଦଇତ (୬) ଜଳ୍ପବର (୭) । ୨୯ ।

---

ସୀତା ଏହିପରି ୪କଷ୍ଟ ସହୁଅଛୁ । ମୋହର ୫ ଏ ଶରୀର ରହି ସୀତାଙ୍କ କ୍ଳେଶ ୬ ସ୍ମରଣ କରୁଅଛୁ । ୨୩ ।

ସେ ସୀତାଙ୍କୁ ଷୋଳବର୍ଷ ବୟସ ଅଟେ । ତାଙ୍କର ମୋର ୮ ଦେହ, ରସ, ଦଶ ଏକ ଅଟଇ । ୨୪ ।

ସହଜରେ ସୀତା ୯ ମହାସୁଗନ୍ଧକାରିଣୀ ଅଟନ୍ତି । ଏଣୁ ୧୦ ଭ୍ରମର ୧୧ ପଦ୍ମକୁ ଇଚ୍ଛା କରଇ ନାହିଁ । ୨୫ ।

ତାହାର ହାସ ଝଲକ ୧୨ ଦେବତାମାନଙ୍କର ଅପଲକକର' ଅଟଇ ଏହା ନିଶ୍ଚୟ ଅଟେ ।୨୬।

ସୀତାଙ୍କ ନୟନର ଏ ଭଳି ବଡ଼ପଣ ଯେ, କଜ୍ଜ୍ବଳ ତାଙ୍କର ୧୩ କତ (କ୍ଳେଶ) ଉପୂରେ ନେତ୍ରପାଖରେ ଶରଣ ପଶିଅଛୁ । ୨୭ ।

ସେ ସୀତା ୧ ଜଗଜ୍ଜନମାନଙ୍କୁ ଅଧୀନ କରଇ ଏଣୁ ୨ ସେ ମନୋହର ରସ ୩ ସ୍ଥାନ ଅଟଇ । ୨୮ ।

ଏପରି ଯେଉଁ ଲୋକ ତାଙ୍କୁ ୫ କ୍ଳେଶ ଦେବାକୁ କପଟ ୪ ସାହାସ କଲଇ ୬ ବିଧାତା ତ ବେଦପଠନରେ ୭ ଜଡ଼ପଣ ହୋଇ ଯାଇଅଛି, ଏହି ହେତୁରୁ ଏଭଳି କଷ୍ଟ ଦେଉଅଛୁ । ୨୯ ।

ଏ ସମୟର ଅହ (୮) ଉଚ୍ଚପନ (୯) ।
ଅମର ପଥ (୧୦) ରକ୍ତ ବରନ ।୩୦।

ମନ୍ଦ (୧୧) ଶବଦ କରଇ ସତ୍ୱର ।
ଗଛଚରମ ନଗ (୧୨) ଶଶଧର (୧୩) ।୩୦।

ଦରରବ (୧୪) କରଦର ଭବନ ।
ଷଟ୍ପଦ ଦରଷ ଶତଦଳ ବନ (୧୬) ।୩୨।

ଷଡ଼ ଚରଣ (୧) ଏରବ କରଣ ।
ଚଳ ସଦନ (୨) ଉପଧବଗଣ (୩) ।୩୩।

ଦଶରଥଜ (୪) ଉଟଜ ଉଦର (୫) ।
ଗତ ନୟନ ଦନ୍ତଘନ ପର (୬) ।୩୪।

ଝ୍ୱଟ ଝ୍ୱଟ (୭) ଜମ ଏ ଉପମ ।
ଧନ କନକ କବର (୮) ଏ ସମ ।୩୫।

---

ଏପରି କହୁଁ କହୁଁ ରାତ୍ର ଶେଷ ହୋଇ ୮ ଦିବସ ୯ ହେଲା ୧୦ ଆକାଶ ରକ୍ତବର୍ଣ୍ଣ ଦିଶିଲା । ୩୦ ।

୧୧ କାକମାନେ ରବଦେଲେ, ୧୩ ଚନ୍ଦ୍ର ୧୨ ଅସ୍ତାଚଳକୁ ଗମନ କଲେ ।୩୧।

୧୫ ଶିବାଳୟରେ ୧୪ ଶଙ୍ଖଧ୍ୱନି ହେଲା ଏବଂ ୧୬ ପଦ୍ମବନ ସବୁ ହର୍ଷଯୁକ୍ତ ହେଲେ ।୩୨।

ଭ୍ରମରମାନେ ସବୁ ଶବ୍ଦ କଲେ ୩ ଜାରପୁରୁଷମାନେ ନିଜ ନିଜର ୨ ଘରକୁ ବାହୁଡ଼ିଗଲେ ।୩୩।

୪ ଶ୍ରୀରାମ ପର୍ଣ୍ଣଶାଳାରୁ ବାହାରି ସେଠାର ଅଗଣାରେ ଠିଆ ହୋଇ ୬ ୬ ମେଘ ଆଡ଼କୁ ଚାହିଁଲେ ।୩୪।

୭ ଶୀଘ୍ର ଶୀଘ୍ରରେ ଏ ଉପମା ମନରେ ଜନ୍ମିଲା ଯେ ଘନ ମଧ୍ୟର ସୀତାଙ୍କର ୮ ସ୍ୱର୍ଣ୍ଣଭୂଷଣ ସଂଯୁକ୍ତ କେଶବେଣୀ ତୁଲ୍ୟ ହୋଇଅଛି ।

ଏ ତ ନର ସହରଷ (୯) କଷଣ (୧୦) ।
ତପ, (୧୧) ତପନ, (୧୨)ତପତ ହରଣ (୧୩) ।୩୬।
ନଦ ସର (୧୪) କରଇ ଜଳଭର (୧୫) ।
ଦବଦହନ (୧୬) ଭୟ ଅପସର (୧୭) ।୩୭।
ପର ନଗର (୧୮) ଗମନ ହରଇ ।
ଜନମନ (୧୯) ରସ ବଶ କରଇ ।୧୮।
ପରତଳ ଶକଟ (୨୦) କଟକର (୨୧) ।
ଇଚ୍ଛଇ ତ ହରଷ ନଡ଼ବର (୨୨) ।୩୯।
ସନମତ (୨୩) ଏ ମନର ତପଳ ।୨୪।
କଥନ କଥନ ରସ ସକଳ ।୪୦।
ଭବବଶକ (୨୫) କମଳ ଚରଣ ।
ଉପଇନ୍ଦ୍ର ଭଞ୍ଜ ମନ ଶରଣ ।୪୧।

---

ଏହି ବର୍ଷାକାଳ ଲୋକମାନଙ୍କର ୯ ହର୍ଷଦାୟକ ଅଟଇ ଏବଂ ୧୦ କଷ୍ଟପ୍ରଦ ୧୧ ଗ୍ରୀଷ୍ମକାଳର ୧୨ ସୂର୍ଯ୍ୟକିରଣର ୧୩ ତାପକୁ ନାଶ କରଇ । ୩୬ ।

୧୪ ସରୋବର ଏବଂ ନଦୀମାନଙ୍କୁ ୧୫ ଜଳପୂର୍ଣ୍ଣ କରଇ । ଆଉ ୧୬ ଦାବାଗ୍ନିର ଭୟ ଦୂର କରଇ ।୩୭।

୧୮ ପ୍ରବାସକୁ ଯିବା ବାରଣ କରେ ଏବଂ ୧୯ ଲୋକମାନଙ୍କର ମନକୁ ଆଦ୍ରରସରେ ବଶ କରଇ ।୩୮।

୨୧ ଗ୍ରାମମାନଙ୍କରେ ୨୦ ଶଗଡ ସବୁ ଗମନାଗମନ କଲା । ୨୨ ବୃକ୍ଷମାନେ ହର୍ଷ ବାଞ୍ଛାକଲେ ।୩୯।

ମନର ୨୪ ବ୍ରୁଷ୍ଟଲ୍ୟ ୨୩ ସ୍ୱୀକାରକଲ ସୀତାଙ୍କର ଯେଉଁ ସବୁ ରସ ତାହା ସବୁ ପ୍ରକାଶ କଲେ ।୪୦।

ସଂସାରର ଆଶ୍ରୟ ଅଟନ୍ତି ଯେଉଁ ରାମଚନ୍ଦ୍ର, ତାଙ୍କର ପଦ୍ମପାଦରେ ଉପଇନ୍ଦ୍ର ଭଞ୍ଜଙ୍କର ମନ ଶରଣ ମାଗିଲା ।୪୧।

---

## ସପ୍ତମ ଛାନ୍ଦ

### ରାଗ-ବସନ୍ତ

ଅସମଶର (୧) ଉଚ୍ଛନ୍ନ କରଇ ତ କଥନ କମଳନୟନ (୨)
କର ଜଳଧର (୩) ସଦୟ ହୃଦୟ (୪) ନ କର ବର ଗରଜନ (୫)
ଜଳଦ, ଚଳକ କନକ ନଗର (୬) ।
ନ କର ସଖ (୭) ପରଝର (୮) ପବନ ଜଳ ବରଷଣ ନ କର ।୧।

ମମ ଧନର ଏସନ ପରସନ୍ନ (୯) ଚପଳ କର ଦରଶନ ।
ତଳ ତଳପ (୧୦) କରଣ ହତ (୧୧) ସତ କଜ୍ଜ୍ୱଳ ସଜଳ (୧୨) ନୟନ
ଜଳଦ, ସତ ଏ ଯଶ ଅରଜନ (୧୩)
ଦହନକ (୧୪) ଚହକ (୧୫) ବଦନରଉଜଳ (୧୬) ସମଅଯତନ (୧୭) ।୨।

ମଦନ ଗଜ (୧୮) ମଥନର ଯତନ ହତ (୯) ଅମ୍ବୁଜ ବଦନ (୨୦)
ଉଚ୍ଛନ୍ନ ଦରଶ (୨୧) ପରଶ (୨୨) ଦଶକ ସମ ଶଶଧର ସହଜ (୨୩)

---

## ସପ୍ତମ ଛାନ୍ଦର ଅର୍ଥ

୧ କନ୍ଦର୍ପ ଉଚ୍ଛନ୍ନ କରିବାରୁ ୨ ଶ୍ରୀରାମ କହିଲେ ହେ ୩ ମେଘ ମୋଠାରେ ୪ ସୁଦୟା କର । ୫ ଘୋର ଗର୍ଜନ ନ କରି ୬ ସ୍ୱର୍ଣ୍ଣ ଲଙ୍କାପୁରୀକୁ ଯାଅ । ୮ । ଚଞ୍ଚଳ ପବନକୁ ୭ ସଙ୍ଗରେ ନିଅ ନାହିଁ ଏବଂ ଜଳ ବର୍ଷାକର ନାହିଁ ।୧।

ସୀତାଙ୍କର ଏଭଳି ପ୍ରସନ୍ନତା ଚଞ୍ଚଳ ଦେଖ । ସେ ୧୦ ଭୂମିରେ ଶୟନ କରିଥିବାରୁ ୧୧ ନାଶ ହୋଇଥିବା କଜ୍ଜ୍ୱଳନେତ୍ର ୧୨ ଜଳପୂର୍ଣ୍ଣ ହୋଇଥିବ । ହେ ମେଘ । ନିଶ୍ଚୟ ୧୩ ଏ ଯଶ ଲାଭହେବ । ଯଶ ତ ଶୁକ୍ଳବର୍ଣ୍ଣ ଏଣୁ ୧୪ ଦଗ୍ଧ ସୁବର୍ଣ୍ଣ ଭଳି ସୀତାଙ୍କର ୧୫ ଜ୍ୟୋତି ୧୬ ରଜତ (ରୁପା) ପରି ଶୁକ୍ଳବର୍ଣ୍ଣ ହୋଇ ୧୭ ଅସୁନ୍ଦର ଦିଶୁଥିବ ।୨।

୧୮ ମଦନ ହସ୍ତୀର ମନ୍ଥନଦ୍ୱାରା ସୀତାଙ୍କର ୨୦ ଶରୀରପଦ୍ମ ୧୯ ଶୋଭା ଶୂନ୍ୟ ହୋଇଥିବ । ଉଚ୍ଛନ୍ନ ୨୧ ଅମାବାସ୍ୟା ୨୨ ସ୍ପର୍ଶ କରିବାମାତ୍ରେ ସୀତାଙ୍କର ୨୩ ଚନ୍ଦ ତୁଲ୍ୟ ଶୋଭା ସହଜରେ ନଷ୍ଟ ହୋଇଥିବ । ହେ ମେଘ ! ଏହି

ଜଳଦ, ଏ ଘନ ସମସ୍ତ ଅସର ।
ମମ ଲପନ ବରଣନ ସ୍ୱପନ ଜଟବତ କର କବର (୨୪) ।୩।
ସତ ଷଟକଣ ବରଷ (୧) ବୟସ ଏ ଜନ ଏ କଷଣ ସହ ।
କଣ୍ଟଭ (୨) ତବ ଦରଶନ ଯତନ (୩) କରଇ ତ ଏସନ କହ ।
ଜଳଦ, ନବ ଛଇଳ ରତନର (୪)
ହରଷ ଜନମ କର ଅଳପକ (୫) ମରଣ ତନ ମନ (୬) ହର ।୪।
ଧନ ସମ (୭) ଧନ (୮) ସତ ଜଗତର ଏସଂ ପରମ ଦରବ (୯)
ଘସ୍ତମତ (୧୦) ସତ ଧରଇ କରଇ ଜନମ ରସ ନଦ ନବ (୧୧)
ଜଳଦ, ଏସନ ନ ହରଇ ଅନ୍ୟ (୧୨)
ଜଳ ମଜ୍ଜନ (୧୩) ବସନ ବଡ ନର ତର ଅପଘନ ଜଡ଼ନ । ୫ ।
ମଞ୍ଜୁ କଳରବ (୧) କଳରବ (୨) ବଚ ରସ ରଞ୍ଚ (୩) ମଞ୍ଜୁବଚନ
ଅମର ଧବ (୪) ନରଧବ (୫) ପଦତ ଇଚଛ (୬) କରଇ ବହନ ।

---

ବର୍ଷାକାଳ ସରୁ ନ ଥିବ, ମୋହର ମୁଖ ଦେଖିବାକୁ ତାକୁ ସ୍ୱପ୍ନ ପରି ହୋଇ-ଥିବାରୁ ତ ହାର କେଶ ଗୁଡ଼ିକ ଜଟାଭଳି ହେବଣି । ୩ ।

ସତେ ୧ ଷୋଳବର୍ଷ ବୟସରେ ସୀତା ଏଭଳି କଷ୍ଟ ସହିଲା । ହେ ଜଳଦ ! ତୁମ୍ଭେ ଯାଇ ସୀତାଙ୍କୁ ଏହା କହିବ ଯେ ୨ ତୁମ୍ଭର ସ୍ୱାମୀ ତୁମ୍ଭର ଦର୍ଶନପାଇଁ ଯତ୍ନ କରୁଅଛନ୍ତି । ହେ ମେଘ ! ଏହା କହି ତାହାର ହର୍ଷ ଜନ୍ମାଅ । ତାହାର ୬ ମରିବା ଇଚ୍ଛା ହରଣ କର । ୪ ।

୭ ଧନତୁଲ୍ୟ ୮ ସୀତା ଏହି କଥା ସତ୍ୟ । ସେ ଜଗତରେ ଏଭଳି ୯ ଉତ୍କୃଷ୍ଟ ପଦାର୍ଥ ସୀତା ନିଶ୍ଚୟ ୧୦ ଦୁଗ୍ଧମତ ଧରଇ । ଦୁଗ୍ଧ ଯେ ଦଧି ଘୃତାଦି ନୂଆ ରସମାନଙ୍କୁ ଜାତକରେ । ସୀତା ଯେ ୧୧ ଶୃଙ୍ଗାର ରସ ନୂତନ କରି ଜାତ କରଇ । ହେ ମେଘ ! ୧୨ ଏହାଭିନ୍ନ ଅନ୍ୟ କେହି ମୋର ମନକୁ ହରଣ କରି ପାରଇ ନାହିଁ । ବସ୍ତ୍ର ଦେହରେ ଜଡ଼ିତ ହେଲାପରି ସୀତା ଚଞ୍ଚଳ ହୋଇ ମୋ ଅଙ୍ଗରେ ମିଶିଯାଏ ।୫।

ମଞ୍ଜୁ ୧ କପୋତ ଏବଂ ମଞ୍ଜୁମୟୂର ୨ ଶବ୍ଦ ପରି ରସ ୩ ପ୍ରବୃତ୍ତି ହେଲେ ଯେଉଁ ମଞ୍ଜୁବାକ୍ୟ ଜାତ କରେ ସେ ୪ ଇନ୍ଦ୍ର ୫ ଓ ରାଜପଦମାନଙ୍କୁ ୬ ତୁଚ୍ଛ

ଜଳଦ; ପଦ କଣ୍ଟକର ଶବଦ । ୭ ।
ଧବଳ ଛନ୍ଦର (୮) ତବଦ କରଇ ହରଇ ମଦନର ମଦ (୯) । ୭ ।
ଧରଇ ଗଳ (୧୦) ଥରଇ ଘନ ଘନ ଇଚ୍ଛଇ ଏ ଶରଣ ଜନ ।
ଦଣ୍ଡ କରଇ ଲବ ଲବ (୧୧) ଦଶନ ବସନ (୧୨) ରସବରତନ
ଜଳଦ, ନଖ ଚଳନ ନ ସହଇ
ଜନମ ତରତରଳ ନୟନେର [୧୩] ରଖ ଏ ବଚନ ଭଣଇ । ୭ ।
ଶୟନ ହଂସ (୧୬) ଚହଟଇ ଚଳଇ ବଦନ ଅମଳ କମଳ (୧୭)
ଜଳଦ, ଅଳକ (୧୮) ଷଟପଦ ଗଣ (୧୯)
ଘନ ନଘନ କମଠ [୨୦] ପରସନ୍ନ ଝଲକ ପଲକ ହରଣ । ୧୮ ।
ଝୁଲୁମ ଜନ କରଇ ଏ ଉପମ କନକ ସମ ଅପଘନ ।
ସତ ଉଲଗନ (୧) ସମତୁଲ ବଣ ଦହ (୨) ଚହକ ବରଧନ ।

---

କରିଦଏ । ହେ ମେଘ । ସେ ରତିବେଳେ ହଂସର ୭ ଧ୍ୱନି ୮ ତହାଙ୍କର ଶଳ ଭଳି ଶବ୍ଦ ରଚନା କରିବାରେ ୯ କନ୍ଦର୍ପର ସର୍ବନାଶ ହୁଏ । ୭ ।

୧୦ କଣ୍ଠରେ ବାହୁ ବେଢାଇ ଧରି ଘନ ଘନ କମ୍ପଇ ଏବଂ ଏତ ଶରଣ-ଜନ, ଏମନ୍ତ ସ୍ତ୍ରୀ, ୧୧ ବେଗ ବେଗ କଣ୍ଡ ୧୨ ଅଧର ରସକୁ ବର୍ଦ୍ଧନସ୍ୱରୂପ ଦାନ କରେ । ହେ ମେଘ । ସେ ନଖ ସ୍ପର୍ଶନକୁ ସହି ନ ପାରି ୧୩ ନେତ୍ରକୁ ଲୋଚକ ପୂର୍ତ୍ତି କରି ରଃ ।କର ରକ୍ଷାକର ବୋଲି କହେ । ୭ ।

୧୫ ଶୃଙ୍ଗାର ରସ ସମୟରେ ୧୪ ସରୋବର ସମାନ ଶୟନ କରେ, ସରୋବରରେ ୧୬ ମୀନ ଚହଟିବା ଭଳି ତାହାର ନେତ୍ର ଚଞ୍ଚଳ ହେଉଥାଏ, ପୁଣି ସରୋବରର ନିର୍ମଳ ପଦ୍ମ ସ୍ଫୁଟିତ ହେଲେ, ଭଳି ତାହାର ମୁଖ ସ୍ଫୁଟିତ ହୁଏ । ହେ ମେଘ । ୧୮ ଚୂର୍ଣ୍ଣକୁନ୍ତଳ ୧୯ ଭ୍ରମରତୁଲ୍ୟ ବଦନପଦ୍ମରେ ଦୋହଲୁଥାଏ, ୨୦ କଣ୍ଟକର ଅଗ୍ରଭାଗ କଚ୍ଛପ ପରି ଆଉ ଚକ୍ଷୁପଲକକୁ ପ୍ରସନ୍ନତା ଝଲକରେ ହରଣ କରେ । ୮ ।

ସୀତାଙ୍କର ଦେହ ସୁବର୍ଣ୍ଣଭଳି ଏହି ଉପମା ପଣ୍ଡିତମାନେ ଦିଅନ୍ତି ଏହା ସତ୍ୟ । ୨ ଲବଣରେ ପୋଡା ହେବା ସୁବର୍ଣ୍ଣ ଅର୍ଥାତ୍ ଲବଣ ସଯୁକ୍ତ ସ୍ୱର୍ଣ୍ଣକୁ ନିଆଁରେ ପୋଡ଼ିଲେ ତାହାର ଯେଉଁପରି ଜ୍ୟୋତି ବଢ଼େ, ସୀତା ଉଲଗ୍ନବେଳେ

ଜଳଦ, ସହଜ ତ ବର ଛଇଳ ।
କଷଇ ଏ ଉର ପଥର ଉପର ରଖଇ କନ୍ତବର (୩) ଛଳ । ୯ ।

ତପସମୟ (୪) ଜଡ଼କର (୫) କରର (୬) ରଣରଣ (୭) ରଣ ରଚନ ।
ନସ୍ତନ ତପ ସଫଳ କରଣର ମଦନ ମଦବରଧନ ।
ଜଳଦ, ଉଲଟ (୮) ରସ ସରଜନ ।
ଅକଥନ ରସ ଜନନ (୯) ଏସନ ଚରଣ କଟକ (୧୦) ମଣ୍ଡନ ।୧୦।

ନକର ସଦନ ଫଳ (୧) ନରତନ କହଇ ଉରମ ଏସନ ।
ଘନରସ (୨) ବରଷଣ ଫଳଦ ଏ ବଶ କରଣ ଭ (୩) ତଳନ ।
ଜଳଦ; ତରମ (୪) ପତନ କବର (୫) ।
ନର୍ତ୍ତନ, (୬) କର ଷଡ଼ଜ ରବ ଧର (୭) ଚପଳ (୮) ଏ ଦରଶନର ।୧୧।

---

୧ ସେହି ଭଳି ଦେଖାଯାନ୍ତି । ହେ ମେଘ ! ସେ ତ ସହଜରେ ଛଇଳାଶ୍ରେଷ୍ଠା । ତାହାର ସୁବର୍ଣ୍ଣ ଅଙ୍ଗକୁ ମୋହର ବକ୍ଷ ପଥରରେ ପରଖ କରି ରଖିଛି । ଏ ଯେ ମୋ ବକ୍ଷସ୍ଥଳରେ ସୀତାର ଅଙ୍ଗସଙ୍ଗ ହେବାର ୩ କୁଙ୍କୁମ ଦେଖୁଛ ସେହ ସୁନାକଷ ମନେ କର । ୯ ।

୪ ଗ୍ରୀଷ୍ମକାଳରେ ୫ ଚନ୍ଦ୍ର ୬ କିରଣଦ୍ୱାରା ୭ କାମରଣ ଉଚାଟ ହେବାରୁ ନେହର ତପସ୍ୟା ସଫଳ ହୁଏ ଏବଂ କାମମଦ ବର୍ଦ୍ଧିତ କରେ । ହେ ମେଘ ! ୮ ପ୍ରତ୍ୟୁଷାପ୍ତ ସର୍ଜ୍ଜନା କରିବା ଦ୍ୱାରା ବାକ୍ୟର ଅଶେଷ ଆନନ୍ଦ ୯ ଜାତ ଦେଖି ସେ ସମୟରେ ୧୦ ନୂପୁରଦ୍ୱ ମାଳବ ହୁଅନ୍ତି । ୧୦ ।

୧ ମୁକ୍ତାହାର ନୃତ୍ୟକରି ଏ ଭଳି ଉପମାକୁ ପ୍ରାପ୍ତହୁଏ ଯେ, ୨ ନବନ୍ତ ଆଦରସ ମେଘ ଜଳପରି ସେ ବର୍ଷା ହେବା ଫଳଦାନ କରେ । ୩ ନାସାମଣିର ( ବୃହସ୍ପତି ନକ୍ଷତ୍ର ) ତଳକ ହେଉଛନ୍ତି ଘନରସ ବର୍ଷୁଅଛି, ଏହି ଭଳି ପ୍ରତୀତ ହୁଏ । ହେ ମେଘ ! ୪ ପିଠିରେ ପଡ଼ିଥିବା ୫ କେଶ ବେଣି ଘନରସ ବର୍ଷିବାର ଦେଖି ୬ ମୟୂର ନୃତ୍ୟ କଲା ଭଳି ସେ ସମୟରେ ୮ ଚପଳ ୬ ନୃତ୍ୟ କରନ୍ତି । ୧୧

ଚଳଇ ଅଳକ (୯) ଜନମ ଶରମ (୧୦) ବଶ ଘରମ ଜଳ କଣ (୧୧)
ଗମନ ରସ ଧନ ରସବମନ (୧୨) କରକ ଷଟ୍‌ପଦ (୧୩) ଗଣ ।
ଜଳଦ, ଚରଳ (୧୪) ଚରଳ କହଇ ।
ଏମନ ନକର ଏ ଉତ୍ସବ ସମ ଅନ୍ୟ ଜଗତର ଅଛଇ ।୧୨।

ସକଳ ଅହ୍ନ (୧) ଲପନ (୨) ସମୟର ମମ ଅମର ପଣ (୩) ଏତ ।
ଅଳସ ଭଗନ ସ୍ତନ ଦରଶନ ଅଧର ରସଦର ସତ (୪) ।
ଜଳଦ; ମଦନ କଳମଷ [୫] ହର ।
ଅଭୟ କରଦ (୬) ବଦଳ କରଜ ପଦ [୭] ଶକଳ ଶଶଧର (୮) ।୧୩।

ମନମଥର (୯) ସ୍ୱମନ୍ଦରବତ (୧୦) ହତ (୧୧) କବର ବରଚୟ (୧୨)
ଉନ ଉନ (୧୩) ପରସନ ଉଦୟକ (୧୪) ଧନର ଏସନ ସମୟ ।
ଜଳଦ, କମଳ ବଦନ ନୟନ (୧୫)
ଚମକବଳ (୧୬) କମଳଧର (୧୭) ବତ ରକତ କମଳ ବରନ ।୧୪।

---

୯ ଚୂର୍ଣ୍ଣକୁନ୍ତଳ ଚଳନ ହେଉଥାଏ । ୧୦ ଶ୍ରମଜାତ ୧୧ ଘର୍ମଜଳ ବହୁ-ଥିବାରୁ ଅଳକ ୧୩ ଭ୍ରମରପରି ଗମନ ରସରେ ମନ କରି ଘର୍ମରସ ମକରନ୍ଦକୁ ୧୨ ଉଦ୍‌ଗୀରଣ କରୁଅଛି କି ? ଏହି ବିଶ୍ୱାସ ହୁଏ । ହେ ମେଘ ! ୧୪ ହାର ମଧ୍ୟମଣି ଚରଳ ଯା ବୋଲି ସେ ସମୟରେ କହେ । ପୁଣି ଏ ଉତ୍ସବ ତୁଲ୍ୟ ଜଗତରେ ଯେ କିଛି ଉତ୍ସବ ଅଛି, ଏପରି ମନେ ନ କର । ୧୨ ।

୧ ପ୍ରତିଦିନ ସକାଳେ ସୀତାଙ୍କୁ ୩ ଦେବୀପ୍ରତିମା ଭଳି ଜାଣି ତାଙ୍କର ୨ ମୁଖ ଅବଲୋକନ କରେଁ । ସେତେବେଳେ ସେ ଅଳସ ଭଙ୍ଗ ବାରୁ କୁଚ ଦର୍ଶନ ହୁଏ । ୫ ପରେ ଅଧର ରସ ଦେବାରୁ ମଦନର ୫ ପୀଡ଼ା ହରଣ ହୁଏ ତାଙ୍କର ସ୍ତନ ଶିବଙ୍କ ଭଳି ୮ ଅର୍ଦ୍ଧଚନ୍ଦ୍ର ପ୍ରାପ୍ତ ୭ ମୋ ନଖଚିହ୍ନ ସର୍ବଦା ଚିହ୍ନ ଅଭୟବର ଦାନ କରେ ।୧୩।

ସୀତାଙ୍କର ୧୨ ଶ୍ରେଷ୍ଠ କେଶ ସବୁ ୧୧ ମୁକ୍ତ ହେବାରେ ୯ କାମରଥର ୧୦ ସ୍ୱମରଭଳ ସେହିକାଳରେ ସେ ୧୩ ଅପରୂପର ପ୍ରସନ୍ନତାକୁ ୧୪ ଜାତ କରଏ । ହେ ମେଘ । ତାଙ୍କର ଯେଉଁ ୧୫ ପଦ୍ମମୁଖ ଏବଂ ନୟନ ଏହିପରି ହୋଇଥାଏ ଯେ ୧୬ ଚନ୍ଦ୍ର ୧୭ ସନ୍ଧ୍ୟା କାଳିମାକୁ ଗ୍ରାସକଲା ବେଳେ , ଯେପରି

ଜଳ ମଜ୍ଜନ (୧) ସମୟୁର ଜଳଜ, (୨) ନ ଭଜଇ ଷଟଚରଣ (୩) ।
ଲପନ (୪) ସଲଗ [୫] ଉଡଇ ରହଇ ନୟନ ପରଶ (୬) କରଣ ।
ଜଳଦ, ଅବନ (୭) ଉଦୟ ଇଛଇ ।

ଏବଣ ଖଗ (୮) ନଭରଚ (୯) ଶବଦ ଧନ ଦରଶନ ଡରଇ ।୧୫।
ମମ ପଛକ ଭର ନଗ [୧୦] ଘଟର ଗଚ ଦରଶନ ବଶର ।
ଅନ ଉପମ ପରସନ୍ନ ଧରଇ ବସନ ଜଳ ଜରଜର ।
ଜଳଦ, ଧନ ମମ ଦରଶନର ।

ସଲ୍ଲଜ ବଣ ଚର ଚର (୧୨) ଓଳଗ କରଇ ସକଳ ଇଚର [୧୩] ।୧୬।
ରଜ [୧] ସମୟୁଚ ପଡ଼ଇ ବଢ଼ଇ ଉଛନ୍ନ ହରଇ ଦରପ [୨] ।
ଏକସଦନର (୩) ଅଲଗ (୪) ଶୟନ କରଇ ଲବକ କଳପ ।

---

ରକ୍ତିମା ଗୁଚ୍ଛକୁ ଧାରଣ କରେ ସେହିପରି ତାଙ୍କର ନେତ୍ର ରକ୍ତପଦ୍ମର ବର୍ଣ୍ଣକୁ ଧାରଣ କରିଥାଏ ।୧୪।

୧ ସୀତାଙ୍କ ସ୍ନାନ ବେଳେ ୩ ଭ୍ରମର ୨ ପଦ୍ମପଖକୁ ନ ଯାଇ ସୀତାଙ୍କ ୪ ମୁଖ ୫ ପାଖରେ ଉଡ଼ୁଥାନ୍ତି ଏବଂ ସେଠାରେ ରହି ତାକୁ ୬ ସ୍ପର୍ଶ କରିବା-ପାଇଁ ନେତ୍ରକୁ ଏକ ଦୃଷ୍ଟିରେ ରଖି ରହିଥାନ୍ତି । ହେ ମେଘ ! ସୀତାଙ୍କ ମୁଖ ନେତ୍ରକୁ ଦେଖି ୭ ପଦ୍ମ ଉଦୟ ହୋଇଅଛି ଏପରି ଇଚ୍ଛା କରନ୍ତି । ସ୍ୱର୍ଣ୍ଣ ଇଚ୍ଛୁକ ଭ୍ରମରମାନେ ଶଙ୍କାରେ ୯ ଆକାଶକୁ ଉଡ଼ି ଯିବାରେ କାମଦେବ ଧନୁର୍ଗୁଣ ଟଙ୍କାର କରୁଅଛନ୍ତି କି ? ସୀତା ଏହା ବିଚାର କରନ୍ତି ।୧୫।

ମୁଁ ହନେ ୧୦ ପର୍ବତଗହ୍ୱର ଗଛ ପଛରେ ସୀତାର ସ୍ନାନ ଦେଖିବାକୁ ଲୁଚି ରହିଥିଲି । ୧୧ ବସନ ଆର୍ଦ୍ର ହେବୁ ଅନୁପମ ମନୋହର ଦିଶିଲା । ହେ ଜଳଦ ! ସୀତା ମୋହର ଲୁଚିବାର ଦେଖି ସଲ୍ଲଜ ଭାବରେ ୧୨ ବ୍ୟଗ୍ର ହୋଇ ଓଳଗ କରିବାରୁ ମୁଁ ସବୁ ବିପଦ ୧୩ ତୁଚ୍ଛପରି ମଣିଲି ।୧୬।

୧ ସେ ପ୍ରସ୍ତବଣ ହେଲାବେଳେ ମୋର ଉଚ୍ଛନ୍ନତା ବୃଦ୍ଧି ହୁଏ ଏବଂ ୨ ଦର୍ପ ନାଶ ହୁଏ ୩ ଏକ ମନ୍ଦିରରେ ୪ ସ୍ୱତନ୍ତ୍ର ହୋଇ ଶୟନ କରେ । ସେ ସମୟରେ ଏକ ଲବ ସମୟ କଳ୍ପପରି ଜଣାଯାଏ । ହେ ମେଘ ! ପୁଣି ଅସହ୍ୟ ୫ କଷ୍ଟ ଜାତହୁଏ, ବର୍ତ୍ତମାନ ଏ ପ୍ରସଙ୍ଗ ଯାହା ୮ ମନେ ପଡ଼ୁଅଛି ସେହି

ଜଳଦ, ଅସହ ଜଷଣ ପତନ (୫)
କରକ (୬) ପତନ ଭଜାଇ ଏ ଜର (୭) ମନତ କରଇ ଜପନ (୮) ।୧୭।

ଅନଉଦୟ (୯) ଅମରଷ (୧୦) କପଟ ମନ ପରମ ରତ ବଶ ।
ଉବର ଉଦୟ (୧୧) ସହଜ ଜଳଜଭବ (୧୨) ରଚନ କର ଯଶ ।
ଜଳଦ (୧୩), ରସ କଳପ ନଗ (୧୪) ସମ,

ଏଜନ ଧନ ଅପହର [୧୫] ସହଇ ରହଇ ଏ ଘଟ ଅଧମ ୧୬ ।୧୮।
ମମ ଅମର (୧) କର ନବ ପଲ୍ଲବ ଅଧରର ରସ ଅଶନ । ୨ ।

ଛଇଳ (୩) ଗଣର ବଡ଼ ଅଯଶ ଏ ସମପ୍ସ କରଇ ଏସନ ।
ଜଳଦ, ଗଦବଚ ସ୍ୱର ଗରଜ (୪)
ଶମନ ଭବନ (୫) ଗମନ ଉତ୍ସବ ଇଛଇ ଏମନ ଚପଳ (୬) ।୧୯।

ଏସନ ବଚନ ରଚନ ସମପ୍ସ ଘନ (୭) ଘଟ ଘନ ରବକ (୮)
ଅଚଳ (୯) ଉପର ପତନ ଚଡ଼କ (୧୦) ଗଦବଚ ଉର (୧୧) କରକ ।

---

ହେବ୍କୁରୁ ମୋହ ୭ ବକ୍ଷସ୍ଥଳରେ କପଟ ୬ ପଥର ପଡ଼ନ୍ତା ଏହି ସୂଚିତ କରୁଅଛି । ୧୭ ।

୧୦ କ୍ରୋଧ ଓ କପଟ ମନରେ ୯ ଜାତ ନ କରି ଅତିଶୟ ପ୍ରୀତିରେ ଯଶ ହୋଇ ୧୨ ଜଳଜଭବ (ବିଧାତା) ସହଜରେ ସଂସାରକୁ ରଚନା କରି ନିଜର ଯଶ ୧୧ ପ୍ରକାଶ କରିଅଛନ୍ତି । ହେ ମେଘ ! ସେ ବିଧାତା କାହିଁକି ମୋ ପ୍ରତି କ୍ରୋଧ ଓ କପଟ ମନରେ ଉଦୟ କରି ୧୪ ରସ କଳ୍ପତରୁ ସୀତାଙ୍କର ୧୫ ବିଚ୍ଛେଦ କରାଇଛନ୍ତି ଏହା ୧୬ ମୋ ଶରୀର ଅଧମ ବୋଲି ସହ୍ୟକଲା । ୧୮ ।

ନବପଲ୍ଲବ ଅଧରର ଯେଉଁ ରସ ତାକୁ ୨ ଆହାର କରିବାରୁ ମୁଁ ୧ ଦେବତାତୁଲ୍ୟ ଅଟେ । କାରଣ ଅମୃତପାନ କଲେ ମାତ୍ରେ ଦେବତା ହୁଅନ୍ତି । ଏପରି ସମସ୍ତ କରୁଅଛି । ୩ । ପୁରୁଷମାନଙ୍କର ବଡ଼ ଅଯଶ ଏ । ହେ ମେଘ । ସେ ସୀତା ଗଦତୁଲ୍ୟ ହୋଇ ୪ କାମଗରଳକୁ ନାଶକରେ । ବର୍ତ୍ତମାନ ସେ ଅନ୍ତର ହେବାରୁ ମୋହର ମନ ୫ ଯମଭବନକୁ ୬ ଶୀଘ୍ର ଯିବା ଉତ୍ସବ କାର୍ଯ୍ୟ ବୋଲି ଇଛା କରେ । ୧୯ ।

ଜଳଦ, ଜଳ ମଜ୍ଜନ ତକ ମଢ ।
ଉପଳ ଅନଳ (୧୨) ଜନମ କରଇ ତବତ ଖଳ ଏସନକ । ୨୦ ।
କଷଣ ଉପର କଷଣ ନ କର ନ ଚଳ ବଡ଼ପଣ ରଖ ।
ଅନଳ (୧) ଗରଳ (୨) ଜନମ କରତ ଉରଗ (୩) ଅଶନର (୧) ସଖ (୫)
ଏ ରସ ଉପଇନ୍ଦ୍ର ଭଞ୍ଜ କହଇ ।
ମହଛନ୍ନ ଦଶରଥ ନରବର (୬) ତନୟ ରତନ ସରଇ ।

---

## ଅଷ୍ଟମ ଛାନ୍ଦ

ରାଗ—କୁମ୍ଭକାମୋଦ ।

ମଉଳ ଉପର (୭) ଶରଦ ଉଦୟ ଜଗତ ଗହନ (୮)
ଖଣ୍ଡ ଖଣ୍ଡକର ଗଜର (୯) ଗର୍ଜନ ସର୍ଜ୍ଜନ ।୧।
ମସ୍ତକ ରତନ (୧) ପତନ ଉଜ୍ଜ୍ୱଳ ନକ୍ଷତ୍ର ଛଳର ।

---

ଏପରି ବାକ୍ୟ କହିବାବେଳେ ୭ ମେଘ ଘଟ ଘଟ ୮ ଶବ୍ଦ କରି ୯ ପର୍ବତ ଉପରେ ୧୨ ବଜ୍ର ମାରିଲାରୁ ବକ୍ଷସ୍ଥଳ ସ୍ତବ୍ଧ ହୋଇଗଲା । ପରେ ସମ୍ବୋଧନ କରି କହିଲେ ହେ ମେଘ ! ଜଳରେ ଝୁଂକମକ ନଳୀକୁ ବୁଡ଼ାଇ ରଖିଛୁ କି ? ଝୁଂକମକ ନଳୀର ପଥରରୁ ୧୨ ଅଗ୍ନି ଜାତ କରେ । ବର୍ତ୍ତମାନ ଜଳରୁ ପାଷାଣ ସହିତ ଅଗ୍ନି ଜାତ ହେଉଛି । ଏହି ହେତୁରୁ ତୁମ୍ଭେ ତ ଏଭଳି ଖଳଲୋକ, ମୁଁ ତୁମ୍ଭଙ୍କୁ ସଜ୍ଜନ ବିଚାରି କହୁଥିଲି ।୨୦।

ଏବେ କଷ୍ଟ ଉପରେ କଷ୍ଟ ନ ଦିଅ । ତୁମ୍ଭର ବଡ଼ପଣ ରଖ । ୧ ଅଗ୍ନି ୨ ବିଷ ଏ ମେଘରୁ ଜ ତକର । ୩ ସର୍ପର ୪ ଖାଦ୍ୟ ପବନ ତୁମ୍ଭର ୫ ମିତ୍ର ଅଟେ । ପରେ ଏ ରସକୁ ଉପେନ୍ଦ୍ର ଭଞ୍ଜ କହିଲେ । ୬ ଦଶରଥ ରାଜାଙ୍କର ପୁତ୍ରରତ୍ନ ଶ୍ରୀରାମଚନ୍ଦ୍ରଙ୍କର ଚିନ୍ତା ସରିଲା ନାହିଁ । ୨୧ ।

---

## ଅଷ୍ଟମ ଛାନ୍ଦର ଅର୍ଥ

ବର୍ଷାକାଳ ଗତ ହେଲାରୁ ୭ ସିଂହପରି ଜଗତ ୮ ଅରଣ୍ୟରେ ଶରତ୍‌କାଳ ଉଦୟ ଅର୍ଥାତ୍ ଉପସ୍ଥିତ ହେଲା । ୯ ମେଘତୁଲ୍ୟ ହସ୍ତୀକୁ ଖଣ୍ଡ ଖଣ୍ଡ କରିବାରୁ ସେ ଗର୍ଜ୍ଜନ ସର୍ଜ୍ଜନ କଲା ।୧।

ଉଲୂକ ତମସ (୨) ଗତ ଦରବଶ (୨) ପର୍ବତ କନ୍ଦର (୨)
ଶଠ ଲକ୍ଷଣ ନ ବହଇ ଶରଦ ବଲ୍ଲଭ ପ୍ରବର ।
କଥନ ଷଡ଼୍ଜ ରଥ (୪) ରବଛଳ ପ୍ରନଥ [୪] ଉତ୍ତର । ୩ ।
ଗଗନ ଛଇଳ ପଛନ ରସତ ଅମ୍ବର ପ୍ରଣୟ ।
ମହାହରଷ ରସବଶ ବଦନ ବନଜ ଉଦୟ । ୪ ।
ସର ନବଜଳ ରଙ୍ଗ ଅମରଷ ହତକ ତପନ ।
ବର୍ଦ୍ଧନ କର ସଉଧ (୬) ସଦନର ମହତ ଉଜ୍ଜ୍ୱଳ । ୫ ।
ସହଚର ପଣ ଲକ୍ଷଣ (୬) ବହଇ ଶରଦ ସମୟ ।
ଚକ୍ର ଉଭୟର କରଇ ସଭ୍ଭର ଅନ୍ତର ସଭୟ । ୬ ।
ଜନମ କରଇ ପଦ୍ମ କଇରବ ହରଷ ପ୍ରକର (୧)
ଭୁବନ ଚନ୍ଦ୍ର ଦରଶନ ରଚନ ପ୍ରକଟ କ୍ଷଣର । ୭ ।

---

ମେଘ ହସ୍ତୀର ୧ ମସ୍ତକର ଥିବା ମୁକ୍ତ (ନକ୍ଷତ୍ର) ଉଲ୍କାପାତ ଛଳରେ ବିପରୀତ ଉଜ୍ୱଳ ହେବାରୁ ଦିବସ ଭୀତ ଉଲ୍ଲୁକ ୨ (ପେଚକ) ମାନେ ଅନ୍ଧକାର ଭୟବଶତଃ ପର୍ବତକନ୍ଦରକୁ ଗଲେ । ୨ ।

ଶରତ୍କାଳ ଶଠ ଲକ୍ଷଣ ଧରେନାହିଁ । ସେ ପ୍ରବରବଲ୍ଲଭ ଅଟଇ । ୪ ହଂସମାନେ ଯେଉଁ ସ୍ୱନ କରୁଅଛନ୍ତି ସେ ମିଥ୍ୟା, * ଶରତ୍କାଳ ନମ୍ରବାକ୍ୟ କହୁଅଛି ।୩।

କହିବାରୁ ଆକାଶ ଛଇଳାରତନ ଭଳି ହେଲା । ତାହା ସ୍ନେହଅନ୍ତର ହୋଇଥିଲା । ନମ୍ରବାକ୍ୟରେ ମହାହର୍ଷ ହୋଇ ରସ ପ୍ରବୃତ୍ତ ହେବାରୁ ପଦ୍ମବଦନ ଜାତ କଲା । ୪ ।

ସରୋବର, ନଭ, କ୍ରୋଧରେ ରକ୍ତବର୍ଣ୍ଣ ହୋଇଥିଲା ଯେ ସେ ଶୀଘ୍ର ନାଶହେଲା । ୬ । ଚୂର୍ଣ୍ଣ ନିର୍ମିତ ରାଜସଦନ ପରି ନିର୍ମଳତାକୁ ଅତିଶୟ ବର୍ଦ୍ଧନ କଲା । ୫ ।

ଶରତ୍କାଳ ଦୂତ ଲକ୍ଷଣକୁ କହିବାରୁ ଚକ୍ରବାକ ଚକ୍ରବାକୀ ବର୍ଷାକାଳ ଅନ୍ଧାରରେ ଯେଉଁ ବିଚ୍ଛେଦ ଭୟ ତାହା ଶୀଘ୍ର ତ୍ୟାଗକଲେ । ୬ ।

ପଦ୍ମ, କୁମୁଦ ଏମାନଙ୍କର ହର୍ଷ ୧ ସମୂହ ଜାତ କରାଇଲା । ଅର୍ଥାତ୍ ଶରତ୍କାଳରେ ପଦ୍ମ କୁମୁଦମାନେ ଫୁଟିଲେ । ସେକାଳ ପ୍ରକଟ ହେଲାଣି ସୂର୍ଯ୍ୟ ! ଚନ୍ଦ୍ର ଦର୍ଶନର ପ୍ରିୟ ହେଲେ । ୭ ।

ଏମନ୍ତ ସମୟ ଦରଶନ କ୍ଷଣ ପଙ୍କଜେକ୍ଷଣ ।
କଥନ ରଭସ (୨) ଗତ ଜଳଧର ସମୟ ଲକ୍ଷ୍ମଣ ।୮।
ଅଗସ୍ତ୍ୟ ଉଦୟ (୩) ଗଗନ ନଗର ଫଳର ଜଗତ ।
ମତ୍ତ ଅରଷିତ ଏସ୍ବର କରଇ ପ୍ଲବଗଣ ହତ (୪) ।୯।
ପଙ୍କ କ୍ଷୟ ମହ ତପସ୍ୱ ଲକ୍ଷକ (୫) ଅସୂନ ବରଜ (୬) ।
ହତପକ୍ଷ (୭) ମମବତ ଏ ଚନ୍ଦ୍ର କରତ ସହଜ ।୧୦।
ମଠ ନ ସହଇ ମରକଟବର (୧) କଣ୍ଠ ବଳଇ ।
ଶ୍ରବଣ କ୍ଷଣ ଏବଚନ ଲକ୍ଷ୍ମଣ ଗମନ କରଇ ।୧୧।
ବତ୍ତ ଅଣକତ କରଇ ଉଚ୍ଛନ୍ନ ଉଲଗ ଗରଳ (୨)
ଇଚ୍ଛଇ ଛଇକରତ (୩) ରସ୍ୱଗଦ ମନତ ଚଞ୍ଚଳ ।୧୨।
ଉପଗତ ନରଇନ୍ଦ୍ର (୪) କତ ଜବ ଅଗସ୍ତ୍ୟ ତପସ ।
ନଳ କଷଣ କଥନ ବତ ମନ୍ତ୍ର ରଚନ ରଭସ ।୧୩।

---

ଶ୍ରୀରାମ ଏହିପରି ସମୟ ଦେଖି ୨ ଶୀଘ୍ର ହୋଇ କହିଲେ ହେ ଲକ୍ଷ୍ମଣ ! ବର୍ଷାକାଳ ଅତିବାହିତ ହୋଇଗଲା ।୮।

ଗଗନବୃକ୍ଷରେ ୩ ଅଗସ୍ତ୍ୟ ଋଷି ଫଳତୁଲ୍ୟ ଉଦୟ ହେଲେଣି । ଆହୁରି ଏ ଶରତ୍‌କାଳକୁ ଅନୁଭବ କରି ସଂସାରରେ ବୃଷଭମାନେ ମତ୍ତହୋଇ ସ୍ୱର କରୁଅଛନ୍ତି । ଏହି ସମୟରେ ମର୍କଟମାନେ (ସୁଗ୍ରୀବାଦି) ଯାହା ଆମ୍ଭ ସମୀପକୁ ଆସୁନାହାନ୍ତି ଏଥିରୁ ଜଣାଯାଏ ୪ ହତାଶ କରିବେ କି ? ।୯।

୬ ପନ୍ଥା (ବାଟ) ସମୁଦ୍ର ୫ ଶ୍ରେଷ୍ଠ ତରୀ ଭଳି ହେଲାଣି । ତପସ୍ୱୀମାନଙ୍କର ପାପ କ୍ଷୟ ହୁଏ, ପଥରକାଦୁଅ ସବୁ କ୍ଷୟପାଇଛି । ମୋ ଭଳି ଚନ୍ଦ୍ରଙ୍କର ୭ ପକ୍ଷ ନାଶ ହୋଇଥିଲା, ଏବେ କିରଣ ସହଜରେ ତାଙ୍କ ସହିତ ଜାତହେଲା ।୧୦।

୧ ସୁଗ୍ରୀବର କଣ୍ଠ ବଳଗଲାଣି, ଏବେ ଆଉ ବିଳମ୍ବ ସହ୍ୟ ହେଉନାହିଁ । ଏଭଳି ବାକ୍ୟ ଲକ୍ଷ୍ମଣ ଶୁଣିଲାକ୍ଷଣି କିଷ୍କିନ୍ଧାକୁ ଯାତ୍ରା କଲେ ।୧୧।

ସେ ଗଳଉତ୍ସରୁ ୨ ଉଚ୍ଛନ୍ନ ବିଷ ବିଶେଷ ଅଧୀର କଲା ଏବଂ ମନ ଚଞ୍ଚଳ ହୋଇ ୩ ସୀତାଙ୍କର ରସଗଦକୁ ଇମିଛକଲ ।୧୨।

ଏହି ସମୟରେ ଅଗସ୍ତି ଋଷି ୪ ବିଷବୈଦ୍ୟ ପରି ଶୀଘ୍ର ଉପସ୍ଥିତ ହୋଇ ନଳ ରାଜାଙ୍କର କଷ୍ଟ କହି ବାକ୍ୟମନ୍ତ୍ରକୁ ଶୀଘ୍ର ରଚନ କଲେ ।୧୩।

ଏ ଅନ୍ତ ଅଚଳ (୫) ଉପର ଭ୍ରମଣ ଜଳଦ ବରନ ।
ଖଗ ନଗ ସର୍ବ ଅଗ୍ରତ କଥନ ଏରୂପ ବଚନ ।୧୪।
ମଦନ ଅପଘନ ଧର କର୍ଦ୍ଦମ ତନୟୁ (୬) ଏ ସତ ।
ମମଥ, ସଗର ତନୟୁ ଦଗଧ କରଇ ସନ୍ତତ ।୧୫।
ପରମ କଷ୍ଟ ଏ ନ ଭଜଇ ଘଟ ବଦନ ବହନ (୧) ।
ମତ ଖଣ୍ଡ ତପବଶରୁ ଏସନ କରମ ଅର୍ଜ୍ଜନ ।୧୬।
ଏକ ପଦ (୨) ବହ ମମ ଧନ ସଙ୍ଗ ସଙ୍ଗମ ଇଚ୍ଛଇ ।
ବଚନ ଏମନ୍ତ କଣ୍ଠ ବନ୍ଧ, ହତ ବକତ କହଇ ।୧୭।
ସତ୍ୟ ପଞ୍ଚଜନ୍ୟ ଉତ୍ତମ ଉପମ ବଚନ ତବର ।
ତପ ବଶ ଲଭ୍ୟ ରହନ ସ୍ୱଜନ ଜନକ ନଗର । (୩) ।୧୮।
ଏଅଙ୍ଗ ଧବଳ କର ଜଳକଣ ପତନକ୍ଷଣର ।
ତବ ଘନରସ ସଙ୍ଗନର ଅପଘନ ତ ଇତର (୩) ।୧୯।

---

ଏଥି ଉତ୍ତାରୁ ଶ୍ରୀରାମ ୫ ପର୍ବତ ଉପରେ ଭ୍ରମଣ କଲେ ଏବଂ ଏପରି ଯେଉଁ ରସବାକ୍ୟ ତାହା ପକ୍ଷୀ ବୃକ୍ଷକମ ମାନଙ୍କ ଆଗରେ କହିଲେ ।୧୪।

କନ୍ଦର୍ପ ୬ କପିଳ ଅପଘନକୁ ଧରିଅଛି ମୁଁ ସଗର ପୁତ୍ର ଏଥିଯୋଗୁଁ ସର୍ବଦା ଦଗ୍ଧ କରୁଅଛି ।୧୫।

ମୋହର ଘଟ ଶୀଘ୍ର ୧ ନାଶ ନ ହୋଇ ଏ ଭୀଷଣ କଷ୍ଟ ସହ୍ୟ କରୁଅଛି । ଏହା ଖଣ୍ଡ ତପସ୍ୟା ଏବଂ କପାଳଲିଖନ ଯୋଗୁଁ ଏ କଷ୍ଟ ସହୁଅଛି ।୧୬।

ହେ ବକ ! ମୁଁ ଯାହା ସହିତ ସଙ୍ଗମକୁ ଇଚ୍ଛା କରୁଥାଇଁ ସେ ମୋହର ଧନ (ସୀତା) ସଙ୍ଗରେ ଏକପଦ କହ । ଅର୍ଥାତ୍ ସେ ସୁନାମ ବିଖ୍ୟାତା ସୀତା; ତୁମ୍ଭେ ମଧ୍ୟ ୨ ଶୀତା (ଶୁକ୍ଳଶ୍ୱେତାଙ୍ଗୀ) କଣ୍ଠ ବନ୍ଧକରି କାନ୍ଦିକ ମୋତେ ହତ କରୁଅଛ ! ଏମନ୍ତ ବାକ୍ୟ କହିବାରୁ ପରେ ବକ କହିଲା ।୧୭।

ସୀତାଙ୍କର ବାକ୍ୟ ପଞ୍ଚମସ୍ୱର ଉପମା ଅଟେ । ଆପଣଙ୍କର ଏଭଳି ସୀତା ତପ ହେତୁରୁ ଲଭ ହୋଇଥିଲେ । ଏବେ ସେ ଲଙ୍କାରେ ରହିଅଛନ୍ତି ।୧୮।

ତାହାଙ୍କର ନେତ୍ରରୁ ଜଳକଣା ପତନ ହେଲାକ୍ଷଣି ମୋ ଦେହକୁ ଶୁକ୍ଳବର୍ଣ୍ଣ କରି ଦେଇଅଛି । ତୁମ୍ଭେ ତାଙ୍କର ଘନ ରସରେ ମଗ୍ନ ହୋଇଅଛ । ତୁମ୍ଭର ଦେହ ୩ ଇତର ଅର୍ଥାତ୍ କୃଷ୍ଣବର୍ଣ୍ଣ ହୋଇଅଛି ।୧୯।

କହଇ ବକ ଲଙ୍କାଧିପ (୧) ସ୍ୟନ୍ଦନ (୨) ଉପର ରଞ୍ଜନ ।
ଉଚସ୍ତନକର ନୟନବନଜ ବନର ଭବନ (୩) ।୨୦।
ଦଶରଥଜ (୪) ଏ ବଚନ ଶ୍ରବଣ କ୍ଷଣ ଜରଜର ।
କଥନ କହ ସତ୍ୟ ତଳ ଦର୍ଶନ ଗମନ ପଥର ।୨୧।
ସହଜ ଏଅନ୍ତ ସ୍ୱର କଳକଣ୍ଠ କଣ୍ଠର ଜୟକ (୪)
ଚପଳ ଉପଳ (୫) ଜଳର ତରଳ ସ୍ତମ୍ଭକ କରକ (୬) ।୨୨।
ବଳର (୭) ହଟକ ଲଭ (୮) ଗଜଗର (୯) ସଲଭ ସମ୍ବର ।
ସର୍ପ ଷଣ୍ଢ (୧୦)ର ଏକ ନୟନ ଦତ୍ତ କରକି ଅମ୍ବର ।୨୩।
ପଥୁ ଅଶନ କରଣ (୧୧) ଚଇତନ କ୍ଷପୂତ ବସ୍ତ୍ରର ।
ଇନ୍ଦ୍ରବତ ବଦନ ସ୍ତନବତ ଶ୍ରବଣ ଏ ସ୍ୱର ।୨୪।
ନଗ ଉପର (୧) ଖଗ (୨) ତଳପତନ ଝଡ଼ଲ ପଲ୍ଲବ (୩) ।
ଭସ ଅଶନ (୪) ଭରମ ପଦ୍ମପର ଭରମ କଦମ୍ବ (୫) ।୨୫।

---

୪ ଶ୍ରୀରାମ ଏ କଥା ଶୁଣିବା କ୍ଷଣି ଜର୍ଜ୍ଜର ହୋଇ କହିଲେ ହେ ବକ ! ସତ୍ୟ କରି କହ, ସିବାବେଳେ ବାଟରେ ଦେଖିଲ କି ? ।୨୦।

ବକ କହୁଅଛି ୧ ରାବଣର ୨ ରଥ ଉପରେ ବସି ବଡ଼ ପାଟି କରି କାନ୍ଦିବାରୁ ପଦ୍ମନେତ୍ରରେ ୩ ଲୋତକ ପୂରି ରହିଥିଲା ।୨୧।

ସ୍ୱର କୋକିଳ କଣ୍ଠକୁ ୪ ଜୟ କରୁଅଛି । ତନ୍ଥାକ ୫ ପଥର ଓ ଜଳ ଏ ଦୁହିଁଙ୍କୁ ଯଥାକ୍ରମେ ତରଳ ଓ ସ୍ତମ୍ଭ କରୁଅଛି ।୨୨।

ଏଭଳି ଶବ୍ଦ ଶୁଣିବାକ୍ଷଣି ୭ ଶଙ୍ଖ ନାଶ ହୋଇଯିବାରୁ ୮ ହସ୍ତୀ, ୯ ସିଂହ, ଅଷ୍ଟପଦୀ, ସମ୍ବର, ସର୍ପ ୧୦ ମୟୂରମାନେ ରତ ହୋଇ ଏକଦୃଷ୍ଟିରେ ଆକାଶକୁ ଚାହିଁଲେ ।୨୩।

୧୧ ବୃକ୍ଷର ଚୈତନ୍ୟ ହେଲା ଯେ ୧୨ ବର୍ଷ ଶେଷ ହୋଇ ବର୍ଷାକାଳ ଉପସ୍ଥିତ ହୋଇଅଛି । ଅନ୍ୟ ଜୀବମାନେ କାଷ୍ଠପରି ହୋଇ ସ୍ତନମାନଙ୍କରେ ମୁଖ ସଂଲଗ୍ନ କରି ଏ ଶବ୍ଦକୁ ଶ୍ରବଣ କଲେ ।୨୪।

୧ ଗଛରେ ବସିଥିବା ୨ ପକ୍ଷୀମାନେ ମୋହ ହୋଇ ତଳେ ପଡ଼ିଗଲେ ୩ ପତ୍ରମାନେ ଝୁଙ୍କା ଝଡ଼ିପଡ଼ିଲେ । ୫ ଆଉ ଭ୍ରମରମାନେ ପଦ୍ମ ଉପରେ ବସି ମଧୁ ୪ ପାନ କରିବାରେ ଭ୍ରମ ହେଲେ ।୨୫।

ସପତ ସ୍ୱର (୬) ଜନମ କଳକଣ୍ଠ ଏସନ ଉତ୍ତର ।
ବୃଦ୍ଧ ନନ୍ଦନ (୭) ଉପଗତ (୮) ଏସନ ତପସତପୁର (୯) ।୨୬।

କ୍ଷଣ ପ୍ରଭବକ (୧୦) ଉଜ୍ଜ୍ୱଳକରକ ବରଣ ଅମ୍ବର (୧୧) ।
ଅର୍ଣ୍ଣବ ମଧ୍ୟ କଟକ (୧୨) ଗତକର ଉଦ୍ୟମ ପ୍ରକର (୧୩) ।୨୭।

କଥନ ଖରପର (୧୪) ମମ ଅନ୍ତର ବଇବର ବଳ ।
ଜଗତଜନଙ୍କ ରଞ୍ଜକ ଏମନ୍ତ ଈକ୍ଷଣ ସକଳ ।୨୮।

କବନ୍ଧ ବଧକ (୧୫) ଅନ୍ଧକ ଅନ୍ତକ (୧୬) ବନ୍ଦନପସୁର ।
ଉପଇନ୍ଦ୍ର ଭଞ୍ଜ ଅନବରତର ଭଜଇ ମନର ।୨୯।

—*—

---

ସୀତାଙ୍କର କୋକଳକଣ୍ଠ ନଃସୃତ ଉତ୍ତରମାନ ୬ ସାଣ ସ୍ୱର ଜାତହେଲାପର ମନେକର ୭ ନାରଦ ୮ ଉପସ୍ଥିତ ହେଲେ କ ? ୯ ମୁନମାନଙ୍କ ମନରେ ଏପରି ବିସ୍ମୟ ହେଲ ।୨୬।

୧୧ ଆକାଶର ଉଜ୍ଜ୍ୱଳକାରଣୀ ୧୦ ବିଜୁଳପରି ପ୍ରଭା ବିଶିଷ୍ଟ ଯେଉଁ ସୀତା ସେ ୧୨ ଲଙ୍କାରେ ଉପଗତ ହୋଇଅଛନ୍ତି । ଆପଣ ସେଠକୁ ଯିବାର ୧୩ ସବୁ ଉଦ୍ୟମ କର ।୨୭

ମୋକ୍ଷର ବିଚ୍ଛେଦ ଦୈବଯୋଗରୁ ଘଟିଅଛୁ । ଜଗତ ରଚନଚାଗ୍ର ୧୪ ଶ୍ରୀରାମ ଏକଥା କହି ଚକ୍ଷୁ ଲୋତକପୂର୍ଣ୍ଣ କଲେ ।୨୮।

୧୫ ଶ୍ରୀରାମ ଏବଂ ୧୬ ଶିବ ଏ ମାନଙ୍କର ପାଦପଦ୍ମ ଉପେନ୍ଦ୍ର ଭଞ୍ଜ ବନ୍ଦନା କରି ସର୍ବଦା ସ୍ତବ କରୁଅଛୁ ।୨୯।

———

## ନବମ ଛାନ୍ଦ

ରାଗ—ଆଷାଢ଼ଶୁକ୍ଳ ।

ବକବର କର କର ଶ୍ରବଣ, ଏମନ୍ତ ପରମ ରମ୍ୟଈକ୍ଷଣ (୧) ।
ମଦନମଦ (୨) ବରଧନକର, ସଂଜଳ (୩) ଚପଳ ଚଞ୍ଚଳତର ।
ଜଗତରଞ୍ଜନ, କତ (୪) ଭୟକ ଶରଣ ଅଞ୍ଜନ (୫) ।୧।
ଅଳକ (୬) ଛନ୍ନ ଜଳଜଚନୟ (୭), ରଚନ ଏସନ ଅମରଚୟ
ସଙ୍ଗରଙ୍ଗ ଅସିତ ଧବଳ, ସତ, ରଜ, ତମ ମଜ୍ଜନସ୍ଥଳ ।
ସ୍ୱର୍ଗତଳ ମର୍ତ୍ତ୍ୟ, ଅନ ଉପମ ଏ ନୟନ ସତ ।୨।
ପ୍ରସନ୍ନ ଈକ୍ଷଣ [୮] ପତନ ସ୍ଥଳ ମଣ୍ଡନ କରଇ ତମ ଉତ୍ପଳ [୯] ।
ଜଗତ କରଇ ନୟନମୟ, ମମ ବଳପର (୧୦) ପର ଉଦୟ ।
ବଢ଼ତ ନ କର (୧୧), ଅମରବତ ବଣନକ ନର ।୩।

---

## ନବମ ଛାନ୍ଦର ଅର୍ଥ

ହେ ବକଶ୍ରେଷ୍ଠ ! ଶ୍ରବଣ କର, ସୀତାଙ୍କର ଯେ ୧ ପରମ ସୁନ୍ଦର ଚକ୍ଷୁ ସେ ଅତ୍ୟନ୍ତ ମନୋହର ଅଟେ ଏବଂ କନ୍ଦର୍ପର ୨ ଦର୍ପବର୍ଦ୍ଧନ କରେ । ଆଉ ୩ କଳା ଧଳା ରଙ୍ଗରେ ବଢ଼ିଶ ହୋଇ ଚଞ୍ଚଳ ହେବାରେ ଜଗତକୁ ରଞ୍ଜନ କରୁଅଛି । ଅତଏବ ୪ କେଶ ଭୟ କର ୫ କଜ୍ଜ୍ୱଳରୂପରେ ଶରଣ ପଶିଛି ।୧।

ସୀତାଙ୍କର ଯେଉଁ ଚୂର୍ଣ୍ଣକୁନ୍ତଳ ସେ ମିଥ୍ୟା, ଦେଖିଲେ ୭ ଭ୍ରମ ତାର ରଚିତ ଅକ୍ଷର ସବୁ ବୋଲି ଜଣାଯାଏ । ଅନନ୍ତର ସୀତାଙ୍କର ଯେ ଲୋଚନ କଳା ଧଳା ରଙ୍ଗକୁ ସଙ୍ଗ କରିଅଛି ସେ ସତ୍ତ୍ୱ, ରଜ, ତମର ଜନ୍ମସ୍ଥଳ । ସେ ସତ୍ତ୍ୱ, ରଜ ତମର ଜନ୍ମସ୍ଥଳ ବୋଲି ପ୍ରଖ୍ୟାତ କରାଇଅଛି ଏବଂ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏ ତିନ ଭୁବନରେ ଉପମା ଦେବାକୁ କିଛି ନାହିଁ ।୨।

ପୁନଶ୍ଚ ଯେଉଁ ପ୍ରସନ୍ନ ୮ ନୟନ ସେ ପତିତ ହେବା ସ୍ଥାନରେ ୯ ନୀଳୋତ୍ପଳକୁ ଭୂଷିତ କରଇ । ସଂସାରଯାକ ନୟନମୟ କରଇ । ମୁଁ ୧୦ ଇନ୍ଦ୍ର ଉପରେ ବଦନ୍ୟ ହୁଏ ଅର୍ଥାତ୍ ୧୦ ଇନ୍ଦ୍ରଙ୍କ ପ୍ରତି ଅଧିକ ହୁଏ ଏପରି ପ୍ରସଙ୍ଗ ବଢ଼ ନ କର । ଦର୍ଶକମାନେ ୧୧ ଦେବତା ପରି ହୁଅନ୍ତି ଅର୍ଥାତ୍ ଅପଲକ ହୁଅନ୍ତି ।୩।

ବଦନ ନୟନ ରମ୍ୟ ଏମନ୍ତ, ପ୍ରତ୍ୟକ୍ଷ ଦର୍ଶନ ବଇର (୧) ହତ ।
କମଳାର (୨) ଉପରେ କମଳ (୩), ଏତ ବଡ଼ ଅସମ୍ଭବ ଅମଳ (୪)
ଅନ୍ୟ କମଳର, ଘର ଅପଚୟ (୫) ହରଷ ହର ।୪।
ଫେଟଫେଟ ତ ପଳକ ପତନ, ଉପମଗଣ ଖଣ୍ଡନ (୬) କରିନ ।
ଧୈର୍ଯ୍ୟ ଚନ୍ଦ୍ର ନବଳାର (୭) ମନ, ତମ [୮] ରଚନ ପ୍ରଚଳ ଲପନ (୯)
ଫେଲକ ପଲକ । ଏସନ ପ୍ରସନ୍ନ ମନ ହରକ (୧୦) ।୫।
ଅନଳ ଛଟକ [୧] କର୍ଣ୍ଣ ଦର୍ଶନ, ବଢ଼ଇ ଫେଟକ (୨) ରତନଗଣ
ଲମ୍ପଟ (୩) ଈକ୍ଷଣ (୪) ମତ୍ସ୍ୟ ଏମନ୍ତ; ଫେଟଫେଟ (୫) ସତ ଗମଇ ଅନ୍ତ
ଏ ଉପଲକ୍ଷଣ । ମନ ହରଷ କରଇ ତକ୍ଷଣ ।୬।
ବଦନ ପଦ୍ମ ଉପରେ ରଞ୍ଜନ, ନୟନ ଉଭୟ-ମତ୍ତ-ଖଞ୍ଜନ ।୭।
କମ୍ପନ କରଇ ପଲକ ପକ୍ଷ, ସର୍ବ ସମ୍ମତ ଏମନ୍ତ ଲକ୍ଷ ।
ଏ ଦର୍ଶନ ଦଶ [୨] । ସମସ୍ତ ପରସ୍ପର (୮) ନଇଣଶ [୯] ।୮।

---

ମୁନ, ନେତ୍ରର ଏପରି ମନୋହାରିତା ସାକ୍ଷାତ୍ ଦର୍ଶନରେ ୧ ଶତ୍ରୁ ନାଶ ହୋଇଯିବ । ୪ ନୀଳ ହୋଇ ୨ ଚନ୍ଦ୍ରଙ୍କ ଉପରେ ୩ ପଦ୍ମ ରହିଅଛି ଏ ବଡ଼ ଅସମ୍ଭବ । ଆଉ ଅନ୍ୟ ପଦ୍ମମାନଙ୍କର ଅପଚୟରେ ଲକ୍ଷ୍ମୀଙ୍କୁ ହରଷ ହରଣ କରୁଅଛି ।୪।

ଚଞ୍ଚଳ ଚଞ୍ଚଳ ହୋଇ ଯେଉଁ ପଲକ ପଡ଼ୁଛି ସେ ଏପରି ନୁହେଁ ! ଉପମାମାନଙ୍କୁ ୬ ଛେଦନ କରିବାର କତ୍ତୃରୀ ବୋଲି ଅନୁମାନ ହୁଏ । କିମ୍ବା ଧୈର୍ଯ୍ୟଚନ୍ଦ୍ରକୁ ୭ ଗ୍ରାସକରିବା ଇଚ୍ଛାରେ ୮ ରାହୁ ୯ ମୁଖ ଚଳନ କରୁଛି କି ? ପଲକ କେମନ୍ତ ଏପରି ପ୍ରସନ୍ନ ହୋଇ ୧୦ ମନୋହାରୀ ହୋଇଅଛି ।୫।

୧ ଅଗ୍ନି ପରି ଯାପ୍ତମନ୍ତ ନେତ୍ରସମୂହ ସୀତାଙ୍କର କର୍ଣ୍ଣ ଧାରଣ କରିଥିବାର ଦେଖି ୪ ନେତ୍ର ମତ୍ସ୍ୟ ତାହାକୁ ଅଗ୍ନି ଭାବ ବୋଲିଭ ହୋଇ ନେତ୍ରାନ୍ତ ପର୍ଯ୍ୟନ୍ତ ୫ ବ୍ୟଗ୍ରରେ ଗମନ କରୁଅଛନ୍ତି । ଏ ଉପଲକ୍ଷଣ ମାନ ସେହି କାଳରେ ମନକୁ ହରଷ କରଇ ।୬।

ନେତ୍ର ଉଭୟ ୭ ମତ୍ତ ଖଞ୍ଜନପକ୍ଷୀ ପରି ବଦନପଦ୍ମ ଉପରେ ରଞ୍ଜନ-ହୋଇ ଅଛନ୍ତି । ପଲକ ପକ୍ଷକୁ କମ୍ପନ କରିବାରୁ ଏଭଳି ଉପମା ଘଟିଅଛି । ସର୍ବସମ୍ମତ ଏହି ଯେ ପଦ୍ମରେ ଖଞ୍ଜରୀଟ ପକ୍ଷୀ ବସିଥିବାର ଦେଖିବା ଲୋକ

ସହଜ ଧନ କନକ ସ୍ୟନ୍ଦନ, (୧) ଅଞ୍ଜନ ବନ୍ଧନ ହୟ ନୟନ (୨)
ଅନବରତ (୩) ଚହଟ ଚଳନ, ମଭ ସବ (୪) ନର ଉରଗ (୬) ମନ
ଜନକ ଏ ଭୟ । ଇଚ୍ଛଇ ପଞ୍ଚଶର (୭) ସମଜୟ ।୮।
ଅମ୍ବୁଜମଧ୍ୟ ଅନ୍ତଃ (୯) ଚଞ୍ଚଳ, ଶତଦଳ (୧୦) ପରମତ୍ତଭ୍ରମର (୧୧)
ବହଳ ମରନ୍ଦ (୧୨) ପଦ ଜଡ଼ଇ, ଅଙ୍ଗ କମ୍ପନ କର ନ ଉଡ଼ଇ
ପଦ୍ମପଦ୍ମଦ୍ୱୟ । ଗତ ମନ୍ଦ ନ କରଇ ଥୟ ।୯।
ରମ୍ୟ ଜଳମୟ ଲପନ (୧) ସର (୨), ହସ କଇରବ (୩) ଉଦୟ କର
ଅନଳ ଚରଣ (୪) ମତ୍ସ୍ୟନୟନ, ମଧ୍ୟ ମରକତ (୫) ପୁତ୍ର ଚଳନ
ବନ୍ଧ ବରଣନ (୬) । କରଇ ଚବ (୮) ପର୍ଯ୍ୟନ୍ତ ଗମନ ।୧୦।

---

ଗଜା ହୁଅଇ । ସୀତାଙ୍କର ମୁଖପଦ୍ମରେ ନେତ୍ର ଖଞ୍ଜନପକ୍ଷୀ ବସିଥିବାର ୭ ଦେଖିବା ଯୋଗୁଁ ସମସ୍ତଙ୍କ ଅପେକ୍ଷା ୮ କନ୍ଦର୍ପ ୯ ଗଜା ହୋଇଅଛୁ ।୭।

ମୋର ସୀତା ସହଜେ ୧ ସ୍ୱର୍ଣ୍ଣରଥ ପରି ହୋଇ ୧ ନେତ୍ର ଘୋଡ଼ାଙ୍କୁ ଅଞ୍ଜନରଜ୍ଜୁରେ ବନ୍ଧନ କରିଅଛନ୍ତି ସେ ୩ ଅନୁକ୍ଷଣ ଚହଟି ଚଳିବାରୁ ଦେବତା ମନୁଷ୍ୟ ଏବଂ ସର୍ପ ପ୍ରଭୃତିଙ୍କର ଭୟ ୬ ଜାତ ହେଉଅଛୁ ।୬। କନ୍ଦର୍ପ ସମ ଜୟ କରିବାକୁ ଇଚ୍ଛାରେ । ଏ ହେତୁ ମୋହର ଭୟ ଜାତ ହେଉଅଛୁ ।

୮ କଳାଡୋଳା ୯ ନେତ୍ରପ୍ରାନ୍ତ ପର୍ଯ୍ୟନ୍ତ ଚଞ୍ଚଳ ହେବା ମିଥ୍ୟା । ୧୦ ସେ ପଦ୍ମ ଉପରେ ୧୧ ଭ୍ରମର ମତ୍ତହୋଇ ଚଳୁଅଛୁ । ଘନ ୧୨ ମଧୁ ସଞ୍ଚିତ ପଦ ଜଡ଼ିତ ହୋଇଯିବାରୁ ଅଙ୍ଗ କମ୍ପନ କରୁଅଛୁ କିନ୍ତୁ ଉଡ଼ିପାରୁ ନାହିଁ । ପଦ୍ମପତ୍ର ଦୁଇ ଭଳି ଦୁଇଚକ୍ଷୁ ଦେଖିଯିବା ପାଇଁ ଲୟ ରଖି ମନ ସ୍ଥିର ନ କରି ଚଞ୍ଚଳ ହେଉଅଛୁ କି ? । ୯ ।

ତାଙ୍କ ୧ ମୁଖ ଦୁଇ ୧ ସରୋବରତୁଲ୍ୟ ଅଟେ, ମୁଖର ରମ୍ୟତା ଜଳମୟ ହୋଇ ତହିଁରେ ହାସ୍ୟ ୩ କୁମୁଦ ଜାତ କରୁଅଛୁ । ୪ ନୟନ ମୀନ ତହିଁରେ ଅଛନ୍ତି । ମୀନମାନେ ଅନଳ ସ୍ପର୍ଶ କରିବାକୁ ଇଚ୍ଛା କରନ୍ତି । ଅତଏବ ନୟନମୀନ ଶ୍ରବଣ ଧାରଣ ରତ୍ନ ଅ ଳ ସ୍ପର୍ଶ କରିବା ବାସନା ରଖି ଅଛନ୍ତି । ଆଉ କଳାଡୋଳା ୫ ମରକତ ନିର୍ମିତ ୬ ନୌକାପ୍ରାପ୍ୟ ଚଳୁଅଛୁ । ବନ୍ଧ ୬ ଦୃଷ୍ଟି ୮ ସେତ୍ର ପ୍ରାନ୍ତ ପର୍ଯ୍ୟନ୍ତ ଗମନ କରୁଅଛୁ ।୧୦।

ପକ୍ଷ ଅର୍ଣ୍ଣବ (୯) ମଥନ ସମସ୍ତ; ଲକ୍ଷଣ ବହଇ ନୟନ ଦ୍ୱୟ !
ଗରଳ ତରଙ୍ଗ (୧୦) ତରଳତର, ସକଳ ଜନର ତରଳକର ।
ଅମର ଅଶନ । ଜନମ କରଇ ସତ (୧୧) ନୟନ ।୧୧।

ଅବଥଦର (୧) ଈକ୍ଷଣ (୨) ପ୍ରସଙ୍ଗ (୩),
ପରଙ୍ଗ ଉଦବ୍‌ଦ (୪) ଗଙ୍ଗ [୫] ସଙ୍ଗ (୬) ।
ପରଣ ସ୍ମର (୭) କଳମଷତର, ସଜ୍ଜନ ଜନର ଯଶ ଇତର [୮] ।
ଧନ୍ୟ ପରସନ । ଅନ୍ୟ ଅମ୍ବକ (୯) ବନ୍ଧନ ସଦନ (୧୦) । ୧୨ ।

ରହସ୍ୟ (୧୧) ଚନ୍ଦ୍ରବଦନ (୧୨), ଏଣଦ୍ୱୟ [୧୩] ସଦତନ (୧୪) ବନ୍ଧନ
ଅଧର ପଲ୍ଲବ ଅନେ (୧୫) ଅର୍ଥ, ରଭସ (୧୬) ଚଞ୍ଚଳ ଅସମରଥ ।
କଜ୍ଜ୍ୱଳ ଚମର ପ୍ରତ୍ୟକ୍ଷ ପଦକଣ୍ଟ [୧୭] ଚରମର (୧୮) ।୧୩।

---

ଏକପକ୍ଷରେ, ସେ ଯେଉଁ ନୟନଦ୍ୱୟ ୯ ସମୁଦ୍ର ମନ୍ଥନ ସମସ୍ତ ଲକ୍ଷଣରୁ ବହିଅଛି । ସାଗର ଅତିଶୟ ତରଳ ୧୦ ଲହରୀରେ ଗରଳ ୧୧ ଓ ଅମୃତ ଜନ୍ମ କରିଥିଲ ଏ ନେତ୍ର କଜ୍ଜ୍ୱଳ ଗରଳ ଧରି ଅତିଶୟ ତରଳିତ ହୋଇ ପକ୍ଷ-ପାତ ତରଙ୍ଗ ପ୍ରକାଶ କରି ସକଳ ଜନମାନଙ୍କୁ ତରଳିତ କରାଉଅଛି । ପୁଣି ଏ ନୟନ ସମୁଦ୍ର ସୁଖାମୃତ ୧୧ ସ୍ୱତଃସିଦ୍ଧରେ ଜାତ କରୁଅଛି ।୧୧।

୨ ନେତ୍ରର ୩ ଚରିତ ୧ କୁହାଯାଇ ନ ପାରେ । ୫ ଗଙ୍ଗା ୪ ଯମୁନା ୬ ସରସ୍ୱତୀ ସଙ୍ଗ ହେଲ ପ୍ରାପ୍ତ ଏ ନେତ୍ର କଳା ଧଳା ରଙ୍ଗ ତ୍ରିଗୁଣ କହୁଅଛି । ଏହାକୁ ସ୍ପର୍ଶକଲେ ୭ କନ୍ଦର୍ପର କଳୁଷ ନାଶ ହେବ । ଯେଉଁ ଲୋକ ମଗ୍ନ ହେବ ତାହାର ଯଶ କି ସାମାନ୍ୟ ? ଅହୋ ସେ ପ୍ରସନ୍ନ ନେତ୍ର ଧନ୍ୟ । ଅନ୍ୟ ଜନ-ମାନଙ୍କ ୯ ନୟନର ୧୦ ବନ୍ଧସଦନ ହୋଇଅଛି ।୧୨।

୧୨ ବ୍ୟାତା ୧୧ କୌତୁକବଶତଃ ୧୩ ଯୋଡ଼ିଏ ମୃଗ ସେ ୧୪ ମୁଖରେ ବାନ୍ଧିଅଛି ।୧୫। ଆଧାର ନିମିତ୍ତ ଅଧର ପଲ୍ଲବ ଦେଇଅଛି । ସେ ମୃଗଦ୍ୱୟ ୧୬ ବ୍ୟଗ୍ରଗତି କରିବା ନିମିତ୍ତ ଚଞ୍ଚଳ ହେଉଅଛନ୍ତି ମାତ୍ର ବନ୍ଧନ ହୋଇଥିବାରୁ ଯିବାକୁ ଅସମର୍ଥ ହେଉଛନ୍ତି । କଜ୍ଜ୍ୱଳ ଲାଞ୍ଛ ଚାମର ପୁଚ୍ଛସ୍ୱରୂପ ୧୮-ପୃଷ୍ଠଦେଶରେ ସାକ୍ଷାତ ୧୭ ପ୍ରକାଶ ହୋଇଛି ।୧୩।

ଅର୍ଦ୍ଧ ଚନ୍ଦ୍ରବତ ଅଳକତଳ (୧), ଖଣ୍ଡ-ଶଶଧର (୨) ଗଣ୍ଡମଣ୍ଡଳ ।
ମନ୍ଦହସ ନବବଳନଂ କର (୩) ଅମ୍ବୁଜ ମଧ୍ୟ (୪) ତମସ (୫) ସଦର (୬) ।
ଅଞ୍ଜନ କପଟ (୭) । ଶ୍ରବଣରନ୍ଧ୍ର ଗମନ କର୍ମଠ (୮) ।୧୪।

ଜନ୍ମିତ ଗନ୍ଧବହ (୯) ଖଗବର (୧୦) ଅଣ୍ଡ ଉପମ (୧୧) ଦରଶନ ଡର
(୧୨) । ପ୍ରକଟ (୧୩) ନୟନପନ୍ନଗଧବ [୧୦] ଦରଶନ ଦର
ଗତ (୬) ଜବ (୧୭) । ତରଳ ବଳର (୧୮) ବମନ (୧୯) କରଇ
କଜ୍ଜଳ ଗର (୨୦) । ୧୫ ।

ହସ୍ତବଳୟ (୨୧) ପଦ କଟକର (୨୨) ସ୍ୱନ ୨୩ ପ୍ରଖର ୨୪ ମର୍ଦ୍ଦଳ ଝର୍ଝର
(୨୫) ସରସ (୨୬) ବଚନ ପଞ୍ଚମସ୍ୱର, ଇକ୍ଷଣ ନର୍ତ୍ତକ (୨୭) ନର୍ତ୍ତନ କର ।
ବସନ ପଣନ୍ତ । ଚଳନ ରଞ୍ଜନ ଅଞ୍ଜନଂସତ । ୧୬ ।

---

୧ କପାଳ ଅର୍ଦ୍ଧଚନ୍ଦ୍ରତୁଲ୍ୟ ହୋଇଅଛି । ଗଣ୍ଡମଣ୍ଡଳ ଖଣ୍ଡ ୨ ଚନ୍ଦ୍ର ପ୍ରାୟ, ମନ୍ଦହାସ ୩ ଦ୍ୱିତୀୟା ଚନ୍ଦ୍ର ପରି । ଚନ୍ଦ୍ରମାନଙ୍କ ଉଦୟ ହେବାରୁ ୫ ଅନ୍ଧକାର ୬ ଭୟସନ୍ତ୍ରତ ପଳାଇ ୪ ନେତ୍ର ମଧ୍ୟରେ ରହିଅଛି । ଅଞ୍ଜନ ଲାଞ୍ଛି ୭ ମିଥ୍ୟା ଅଟେ । କେବଳ ସେହି ବାଟରେ ଅନ୍ଧକାର ଶ୍ରବଣ ରନ୍ଧ୍ରକୁ ଗମନ କରିବାକୁ ୮ ଲୋଭ କରଅଛି । ୧୪ ।

ଜନ୍ମିତ ୯ ନାସା ୧୫ ଗରୁଡର ୧୧ ଅଣ୍ଡ ପରି । ତାକୁ ଦେଖିବାରୁ ୧୨ ଭୟଙ୍କର ୧୩ ପ୍ରକାଶିତ ୧୪ ନୟନ କାଳୀୟସର୍ପ କର୍ଣ୍ଣ ୧୫ ରନ୍ଧ୍ରକୁ ୧୬ ବ୍ୟଗ୍ର ୧୭ ଯିବାପାଇଁ ଇଚ୍ଛାକରେ ଏବଂ ୧୮ ତ୍ରସ୍ତ ହେବାରୁ କଜ୍ଜଳତୁଲ୍ୟ ୨୦ ବିଷ ଉଦ୍‌ଗାର କରୁଅଛି । ୧୫ ।

୨୧ ହସ୍ତକଙ୍କଣ ଏବଂ ୨୨ ପାଦର ପାହୁଡ଼ ୨୫ ଖଞ୍ଜରି ଧ୍ୱନି ପରି ୨୪ ମର୍ଦ୍ଦଳ ୨୩ ଶବ୍ଦ କରୁଅଛି ।୨୬। ରସଯୁକ୍ତ ବାକ୍ୟ ପଞ୍ଚମସ୍ୱର ଅଟଇ । ଏ ଯୋଗୁ ନେତ୍ର ୨୭ ନାଟୁଆ ନୃତ୍ୟ କରୁଅଛି । ନର୍ତ୍ତକମାନେ ଲୁଗାପଣନ୍ତକୁ ଚାଳନ କରୁଥାନ୍ତି । ଏ ନେତ୍ର-ନର୍ତ୍ତକୀ ସ୍ୱତଃସିଦ୍ଧରେ ପ୍ରକାଶ କରି ଅଞ୍ଜନଲାଞ୍ଛିକୁ ଲୁଗା କାନଭଳି ଚାଳିତ କରିବା ଦ୍ୱାରା ମନୋହରଣ କରୁଅଛି । ୧୬ ।

ନୟନତ ମନମଥର (୧) ଶର, ଉଦୟ ନବମ ଲଗ୍ନ (୨) ସଙ୍ଗର ।
ପ୍ରଜ୍ୱଳ (୩) କଜ୍ୱଳ ଛଳ ସଗର (୪) ବନଭବନଜନ (୧୫) ତପହର ।
ପକ୍ଷ (୬) ପକ୍ଷଧର । ଯଶ ଉଦୟକ ମନମଥର ।୧୭।

ବଉଦରବଶ (୭) ହର (୮) ପଥର, ଏ ଅଙ୍ଗ (୯) ଏସନ ତରଳକ ।
ଉର (୧୦) ଶରଣ ଉରଜ କପଟ [୧୧], ଗ୍ରହଣ କରକ ପ୍ରଚ୍ଛଦପଟ । (୧୨)
ଏମନ୍ତ ଈଶ୍ୱର । ଜଗତ ଛନ୍ନ କରଣ ଇତର (୧୩) ।୧୮।

ନୟନ ଉତ୍ତମ ଝଲକ ଭଲ (୧) ସରଳ (୨) କଜ୍ଜଳ ମହାଉଜ୍ଜ୍ୱଳ ।
ନ କରଇ ଅପଘନର (୩) କ୍ଷତ (୪), ପ୍ରଶଇ ସଭ୍ୟର ଅନ୍ତଗଢ (୫)
ଅସମ୍ଭବ ବତ । ବମ୍ହତ (୬) ରକ୍ତ ବ୍ୟକତ (୭) ଅନ୍ତ [୮] ।୧୯।

---

ନୟନ ୧ କନ୍ଦର୍ପଶର ତୁଲ୍ୟ ୨ ଯେନ ଭ୍ରୂଲତା ସଙ୍ଗରେ ଜାତ ହୋଇଅଛି । ୩ ପ୍ରାନ୍ତେ ମନ୍ତ କଜ୍ଜ୍ୱଳ ମିଥ୍ୟା । ସେ ୪ ବିଷ ବିଶେଷ ଜ୍ଞାନକର । ୫ ତପସ୍ୱୀମାନଙ୍କର ତପ ନାଶକରିବ । ଆହୁରି ସେ ୬ ନେତ୍ର ପକ୍ଷ (ଡେଣା) ଧାରଣକରି ଉଡ଼୍‌ଡୀୟମାନ ହେବା ହାସ କନ୍ଦର୍ପର ଯଶ ପ୍ରକାଶ କରିବାକୁ ମନ କରୁଅଛି । ୧୭ ।

ବଉ ୭ ଉପ୍ଲବଶରେ ଶିବ ପଥର ହେବାରୁ ୯ ତାଙ୍କର ଦେହ ମୂର୍ଚ୍ଛା ତରଳଗଲ । ୧୦ ତାଙ୍କର ଯେ ସ୍ତନ ସେ ମିଥ୍ୟା । ଶିବ ବକ୍ଷଦେଶରେ ଶରଣାପନ୍ନ ହୋଇ ଅଛନ୍ତି । ୧୧ । ତଥାପି ସେଠାରେ ପାଣିପୀଡ଼ନ ପ୍ରାପ୍ତ ହେବାରୁ ୧୨ ଓଢ଼ଣା [ବସ୍ତ୍ରାବୃତ ହୋଇ ଲୁଚିଅଛି । ଯେ ସ୍ଥଳେ ଶିବ ଏଭଳି ଦଶାକୁ ଲଭିଲେଣି, ଜଗତ ଜନମାନଙ୍କର ଛନ୍ନତା ହେବାର କଥା ବଡ଼ ନ କର ।୧୮।

ନେତ୍ରର ଯେ ଉତ୍ତମ ଝଲକ ହୋଇଅଛି ସେ ୧ ଭଲପରି ଅଟେ । ୨ ନିର୍ମଳ କଜ୍ଜଳ ଲଞ୍ଜୀ ତୀକ୍ଷ୍ଣଧାର ପରି ଅତି ଉଜ୍ଜ୍ୱଳତର ପ୍ରକାଶ ହୋଇଅଛି । ସେ ନେତ୍ର ଭଲ ୩ ଶରୀରକୁ ୪ ଘାତ ନ କରି ଚଞ୍ଚଳରେ ୫ ଅନ୍ତଃକରଣରେ ପ୍ରବିଷ୍ଟ ହୋଇ ବମ୍ହ ୬ ନାଶ କରୁଅଛି ଏ ଅସମ୍ଭବ ଅଟେ । ଦମ୍ଭ ନାଶ କଲି ବୋଲି ସେ ନେତ୍ରଲଭ ୮ ପ୍ରାନ୍ତରରେ ରକ୍ତ ୭ ପ୍ରକାଶ କରିଅଛି । ୧୯ ।

ଗଣଇ ସନ୍ତତ ଗଣ ଈଶ୍ୱର (୯), ତପ ଲକ୍ଷଣ ଜପ କପଟର ।
ସମ ଉପମ ମନ ନ ଧରଇ [୧୦], ଏକଲୟର ସମସ୍ତ ହରଇ ।
ଏସନ ନୟନ । ବର୍ଣ୍ଣନ କର [୧୧] ବର୍ଣ୍ଣନ ଗହନ (୧୨) ।୨୦।

ବାଞ୍ଛକ (୧୩) ନୟନ ବରଣନର, ଇନ୍ଦ୍ର ଦଶଶତନୟନ ୧୪ ଧର ।
ରମ୍ୟ [୧୫] କଥନତରସ (୧୬) ଅନନ୍ତ (୧୭) ସହସ୍ର ଲପନ (୧୮) ଧରକ
ସତ । ଏସନ ନୟନ ମମ ସମ (୧୯) ଧର ଜଳଭବନ [୨୦] ।୨୧।

ଏ କଥନ ଖର [୧] ଖରଅନ୍ତକ (୨) ବକ ହରଷକ (୩) ବରଦତ୍ତକ (୪)
କନକ ନଗର (୫) ଗମନ ମନ, ଗମନ ବଶ ଛଦନ (୬) ସଦନ (୭) ।
ଏ ରସ କହଇ । ଉପଇନ୍ଦ୍ର ଭଞ୍ଜ ଅଘ [୮] ଦହଇ । ୨୨ ।

---

୯ ଗଣେଶ୍ୱରଙ୍କର ତପସ୍ୟା ଲକ୍ଷଣ ଜପ କପଟ ଅଟେ । ସେ ସର୍ବଦା ଗଣନା କରୁଅଛନ୍ତି ଯେ ତାହା ସମ ଉପମା କେହି ୧୦ ମନକୁ ଆସୁନାହିଁ । ଏକ ଲୟ କରିବା ସମସ୍ତକୁ ହରଣ କରଇ ଏଭଳି ଯେଉଁ ନେତ୍ର, ତାହା ୧୧ କବିତାରେ ବର୍ଣ୍ଣନ କରିବା ୧୨ କଷ୍ଟ ହୋଇଅଛି ।୨୦।

ସେ ନୟନକୁ ବର୍ଣ୍ଣନ ୧୩ କରିବା ଇଚ୍ଛାରେ ପ୍ରବୃତ୍ତ ହୋଇ ଇନ୍ଦ୍ର ୧୪ ସହସ୍ରେ ଚକ୍ଷୁ ଧାରଣ କରିଅଛନ୍ତି । ସେ ନେତ୍ରର ୧୫ ମନୋହାରିତ୍ୱ ବର୍ଣ୍ଣନା କରିବା କାରଣ ୧୬ ଶୀଘ୍ର ହୋଇ ୧୭ ଶେଷଦେବ ୧୮ ସହସ୍ରେ ମୁଖଧାରଣ କଲେ । ଏଭଳି ଯେଉଁ ନେତ୍ର ୧୯ ସମାନରେ ୨୦ ଜଳଧାର ହୋଇଅଛି ।୨୧।

୨ ଶ୍ରୀରାମ ୧ ବ୍ୟଗ୍ରସହିତ ଏଭଳି କହିଲେ ୩ ହର୍ଷମନରେ ବକକୁ ୪ ବରଦାନ କରି ୫ ଲଙ୍କାପୁରକୁ ଗମନ କରିବାକୁ ମନ କଲେ । ତତ୍ପରେ ୬ ପଥ ୭ କୁଡ଼ିଆକୁ ଗମନ କଲେ । କବି ଉପେନ୍ଦ୍ର ଭଞ୍ଜ ଏହି ଚରିତ୍ରକୁ ବର୍ଣ୍ଣନା କରି ଜଗତର ୮ ପାପ ନାଶ କରୁଅଛନ୍ତି ।୨୨।

---

## ଦଶମ ଛାନ୍ଦ

ରାଗ—ରାମକେରୀ

ସଲକ୍ଷଣ ମକ୍ଷ (୧) ରକ୍ଷଣ ଚର ଅଚର ଇନ (୨)
ଚଳଇ (୩) ଫଉନ ପର ଚଞ୍ଚଳ ମନ ।୧।

ଖଗ (୫) ନଗ (୬) ଅଗ୍ର ରଚନ ସପ୍ରଚନ (୭) ବଚନ
କହ କହ କଳ ଏସନ ପରସନ୍ନ ଦର୍ଶନ ।୨।

ସତ ଶତ ଶତ କଳପ ଏକମନ ମଦନ (୮)
କରଣ ଛଇଳ ରତନ ଅପଘନ ଯତନ ।୩।

ସ୍ୱର୍ଣ୍ଣ ବର୍ଣ୍ଣ ଲକ୍ଷ ଇଚ୍ଛଇ ସମ ଅସମରଥ
ପଡ଼ଇ ଅନଳ ଜଡ଼ଇ ଜଳମଜ୍ଜନ ଅର୍ଥ ।୪।

ଝଟକ ଛଟକ ଅଳପ କ୍ଷଣପ୍ରଭ (୯) ଲଭଇ
ବସନ୍ତ ବସନ (୧୦) ଗ୍ରହଣ ଅନ୍ତ ସତ କରଇ ।୫।

---

## ଦଶମ ଛାନ୍ଦର ଅର୍ଥ

ସୁଲକ୍ଷଣ ଏବଂ ୧ ଯୋଗ ରକ୍ଷଣକର୍ତ୍ତା, ସଚରାଚର ପ୍ରଭୁ ଶ୍ରୀରାମଚନ୍ଦ୍ର ପବଂତ ଉପରେ ୩ ଚଳପ୍ରଚଳ ହେବାରୁ ୪ ନିର୍ମଳ ମନ ଚଞ୍ଚଳ ହେଲା ।୧।

୭ ବନସ୍ଥ ବାକ୍ୟରେ ୫ ପକ୍ଷୀ ଏବଂ ୬ ବୃକ୍ଷମାନଙ୍କ ଆଗରେ କହିଲେ କହ କହ ଏ ପ୍ରକାର ପ୍ରସନ୍ନତା ଦେଖିଲ କି ? ।୨।

ସତଶରୀର ଜାଣି ଶତ ଶତ କଳ୍ପ ପର୍ଯ୍ୟନ୍ତ ଏକଚିତ୍ତ ହୋଇ ୮ କନ୍ଦର୍ପ ସୀତାଙ୍କ ଦେହକୁ ଯତ୍ନକଲା ।୩।

ସୁବର୍ଣ୍ଣ, ସୀତାଙ୍କ ବର୍ଣ୍ଣ ଭଳି ହେବାକୁ ଇଚ୍ଛା କରି ସମାନ ନ ହେବାରୁ ଥରକୁ ଥର ନିଆଁରେ ପୋଡ଼ିହୋଇ ପାଣିରେ ବୁଡ଼ୁଅଛି ।

ସୀତାଙ୍କର କାନ୍ତି ଝଟକ ସମାନରେ ୯ ବିଜୁଳି ଚମକ ପ୍ରକାଶ କରି କ୍ଷଣିକତାକୁ ପାଇଅଛି । ପୁଣି ବସନ୍ତ ସମସ୍ତ ହଳଦିଆ ରଙ୍ଗରେ ଅସମାନ ହେଇ ସୀତାଙ୍କର ୧୦ ପିନ୍ଧିବା ବସ୍ତ୍ରକୁ ସବଂଦା ଗ୍ରହଣ କରିଅଛି । ୫ ।

ସର୍ବ ସନମତ ଏମନ୍ତ କଚଚୟ୍ (୧) ବହଇ ।
ସହଜ ବରହ (୨) ଗହନ ଉପଲକ୍ଷ ଧରଇ । ୬ ।
ହରଇ ଭ୍ରମର ଅମରବ ରରହ୍ (୩) ବରନ
ଚମର (୪) ତରଙ୍ଗ ପ୍ରଲମ୍ବ ବନ୍ଧ ଅବଲମ୍ବନ ।୭।
ଏଣ (୫) ମଦଗନ୍ଧ ସମ୍ପଦ (୬) ଅନବର୍ତ୍ତ (୭) ସଘନ ।
ବନ୍ଧନ ଛନ୍ଦନ ବନ୍ଧନ (୮) କର ସକଳ ମନ ।୮।
ଉତ୍ତମ ଘନ (୯) ତମ (୧୦) ତମ (୧୧) ଗର୍ବ ଖର୍ବକ ସତ ।
ସର୍ବ ସଲକ୍ଷଣ ଉପମା ନ ଘଟଇ ଜଗତ । ୯ ।
ଦର୍ପକ (୧୨) ଦର୍ପଣ ବଦନ ସମ ରଚଇ ଯତ୍ନ ।
ଦର୍ପ (୧୩) ହତ ଅର୍ଥ ସହଇ କର୍ଣ୍ଣ ଦର୍ପଣ ରତ୍ନ । ୧୦ ।
ଅଲକ୍ଷ (୧) ଇଚ୍ଛଇ ବଳକ୍ଷକର (୨) ହତଲକ୍ଷଣ (୩) ।
ସମସ୍ତ ସମସ୍ତ ସମ ଏ (୪) ନ କରଇ ରକ୍ଷଣ । ୧୧ ।

---

ସୀତାଙ୍କର ୧ କେଶ ସବୁ ଏଭଳ ଉପମା ବହୁଅଛୁ ଯେ ୨ ମୟୂର ପକ୍ଷୀର ଉପମା ସହଜ ବୋଲିବାକୁ ହେବ ।୬।

ଏବଂ ଭ୍ରମର ଓ ଇନ୍ଦ୍ରମା ·ମଣି ଏ ଦୁହଙ୍କର ବର୍ଣ୍ଣକୁ ହରଣ କରୁଅଛୁ । ୪ ଗ୍ଭମର ଓ ଲହଣ୍ଡ ଭଳ କେଶ ଲମ୍ବ ଏବଂ କୁଞ୍ଚିତ ହୋଇଅଛୁ ।୭।

୫ ମୃଗମଦ (କସ୍ତୁରୀ)ର ୬ ସୁଗନ୍ଧରେ ୭ ସର୍ବଦା ପୂର୍ଣ୍ଣ ହେଇଅଛୁ । ଆହୁରି ସେ କେଶ ଯାହା ୮ ଛନ୍ଦାଛନ୍ଦ ହୋଇଅଛୁ ସେ। ତାହା ନୁହେଁ ! ତାହାଦ୍ୱାରା ସମସ୍ତଙ୍କ ମନକୁ ବନ୍ଧନ କରୁଅଛୁ ।୮।

୯ ମେଘ ଅନ୍ଧକାର ୧୧ ରାହୁ ଏମାନଙ୍କର ଗର୍ବ ଉତ୍ତମ ରୂପେ ଧ୍ୱଂସ କରି ସର୍ବଲକ୍ଷଣଯୁକ୍ତ ହେବାରୁ କେଶର ଉପମା ଜଗତରେ କିଛୁ ଘଟୁ ନାହିଁ ।୯।

ସୀତାଙ୍କର ବଦନତୁଲ୍ୟ କରିବାପୁ କନ୍ଦର୍ପ ୧୨ ଦର୍ପଣର ନିର୍ମଳତାକୁ ରଚନା କରଇ । କନ୍ଦର୍ପର ୧୩ ଗର୍ବନାଶ ହେବାରୁ କର୍ଣ୍ଣରେ ଥିବା ରତ୍ନଦର୍ପଣ ହସୁଅଛୁ । ୧୦ ।

ସୀତାଙ୍କର ଏ ମୁଖ ସଙ୍ଗେ ୨ ଚନ୍ଦ୍ର ୩ ଅସମାନ ହେବାରୁ ୪ ପ୍ରଥମେ ଲଜ୍ଜିତ ହୋଇ ଏକ ଦିବସ ଅମାବାସ୍ୟାରେ ଲୁଚ ରହି ପ୍ରତ୍ୟହ କ୍ଷୀଣତା ଲଭିଲେ ।୧୧।

ଅନ୍ୟ ଅନ୍ୟ ସଙ୍ଗ କରଇ କନ୍ୟ (୫) ଧନ୍ୟ କଳଙ୍କ ।
ଜନମ ଜନମ ରଖଇ ମନ ଏସନ ଦଳ ।୧୨।

କମଳ ମଞ୍ଜନ (୬) କମଳ (୭) ମଧ୍ୟ ଗଳ (୮) ପର୍ଯ୍ୟନ୍ତ
ତପନ (୯) ଭକତ ଲଗନ (୧୦) ସମ ଜପନ ସତ । ୧୩ ।

ପନ୍ଦର ବୟସ ମନ୍ଦର ସ୍ତନ (୧୧) ମଦ ଜନ୍ମତ (୧୨) ।
ଅବଲମ୍ବକର ଅପର ଯକ୍ଷ କନ୍ଦର ମତ (୧୩) । ୧୪ ।

ମଧ୍ୟ (୧୪) ଭଗନ ଦରଶନ ନ ବଢ଼ଇ ଅତ୍ୟନ୍ତ ।
ରଖାଇ ତରଳ (୧୫) ଅଗସ୍ତ୍ୟ ସତ୍ୟ ବଶ ଏମନ୍ତ ।୧୫।

ଇଚ୍ଛଇ ଅଚ୍ଛଇ ସ୍ତନର ଲକ୍ଷ୍ୟ କନକଧର (୧) ।
ତ୍ୟକ୍ତ ନ କରଇ କଳକକର (୨) କର ପ୍ରକର (୩) ।୧୬।

---

୫ ଅନ୍ୟମାନେ ଅର୍ଥାତ୍ କୁମୁଦ ବସନ୍ତାଦି ସଙ୍ଗ କଲେ ତେବେ ସୁଦ୍ଧା ସମାନ ନୋହିବାରୁ ମନରେ ଶଙ୍କା ରଖି ଜନ୍ମେ ଜନ୍ମେ ନିଜର ଦେହରେ କଳଙ୍କ ସଙ୍ଗ କରି ସୀତାଙ୍କ ମୁଖକୁ ଧନ୍ୟ ଧନ୍ୟ କରୁଅଛନ୍ତି । ୧୨ ।

୬ ଠାରୁ ୧୦ ସୀତାଙ୍କ ମୁଖ ସମହେବାକୁ ଇଚ୍ଛାକରି ୮ ବେକ ଯାକେ ୬ ଜଳରେ ବୁଡ଼ ରହି ୯ ସୂର୍ଯ୍ୟଙ୍କ ଭକ୍ତ ହୋଇ ତପସ୍ୟା କରୁଅଛି ।୧୦।

ସୀତାଙ୍କର ବୟସ ପନ୍ଦର ବର୍ଷ ହୋଇଥିବାରୁ ତାଙ୍କର ୧୧ କୁଚ ବେବତା, ଯକ୍ଷମାନଙ୍କ ଆଶ୍ରିତ ୧୩ ମେରୁମନ୍ଦର ପର୍ବତ ଭଳି ୧୨ ଉଚ୍ଚ ହୋଇଅଛି । ୧୪ ।

କଟି ମଧ୍ୟ ଅତ୍ୟନ୍ତ ବଢ଼ିଲେ ଭଗ୍ନ ଅର୍ଥାତ୍ ନାଶ ହେବ । ଉରର ହାର-ମଧ୍ୟମଣିର ଜ୍ୟୋତି ନକ୍ଷତ୍ର ପରି ହେବାରୁ ତାକୁ ଅଗସ୍ତ୍ୟ ମହର୍ଷି ବୋଲି ବଶ ହୋଇ ଉପରେ ରହିଅଛି । ଅଗସ୍ତ୍ୟ ସମୁଦ୍ରକୁ ପାନ କରିଥିବାର କଥିତ ଅଛି ।

ପୁଣି ଉରର ହାରରେ ଥିବା ସୂର୍ଯ୍ୟକାନ୍ତମଣି, ସୂର୍ଯ୍ୟ ଭଳି । ସେ ସ୍ତନ ୧ ସ୍ୱର୍ଣ୍ଣମେରୁ ପର୍ବତକୁ ଛାଡ଼ି ନ ପାରି କିରଣ ସବୁ ପ୍ରକାଶ କରି ଏହି ଲକ୍ଷଣକୁ ବହିଛି । ୧୬ ।

ଜମ୍ବୁଫଳ [୪] ସଙ୍ଗ (୫) ରଚନ ରଅବସନବଶ ।
ଏ ଘଟଣ ସମ ଘଟଇ ଘଟ ସ୍ୱର୍ଣ୍ଣକଳଶ । ୧୭ ।

ଶତଦଳ (୬) କଢ଼ ସ୍ତବକ [୭] ଚକ୍ର ଚକ୍ର ଉଭୟ ।
କନକ କଚ୍ଛପ ପର୍ବତବର ଲକ୍ଷ ଉଦୟ । ୧୮ ।

ମଦନ ବସନ ସଦନ [୮] ଏ କହଇ ଅଧମ ।
ଉଚ୍ଚ ସଞ୍ଚ ଘଞ୍ଚ କର୍କଶ କହଇ ଏ ଉପମା । ୧୯ ।

ହତ ମତ୍ତ ଚକ୍ର ଧରଇ (୯) ହର ଏମନ୍ତ ବଢ (୧୦) ।
ରସ ରଚନ ରହସ୍ଥଳ [୧୯] ରମ୍ୟ ଉରଜ ପଦ ।୨୦।

ପଦ ରଙ୍ଗ (୧) ନବ ପଲ୍ଲବ ଏକଲବ ଧରଇ ।
ହକଳଦଣ୍ଡ (୧) ଦଣ୍ଡବତ (୩) ଅଳକତ କରଇ । ୨୧ ।

---

ଇନ୍ଦ୍ରର ସଖା କୁବେରଙ୍କର ପୁଷ୍ପକଭମାନ ସଙ୍ଗରେ ସ୍ତନ ସମାନ ହେବାରୁ ବଚିତ୍ର ବସନ ରଚନାଦ୍ୱାରା ସମସ୍ତଙ୍କୁ ବଶ କରୁଅଛୁ । ଅନନ୍ତର ରଥର କଳଶ ଏବଂ ସୁବର୍ଣ୍ଣ କଳଶର ତୁଲ୍ୟ ଘଟଣା ହୋଇଅଛୁ ।୧୭।

ପୁଣି ସେହି ସ୍ତନ ୬ ପଦ୍ମ କଢ଼ର ୭ ଗୁଚ୍ଛଭଳି ପ୍ରକାଶ ହୋଇଥିବାରୁ ଚକ୍ରବାକ ପକ୍ଷୀଯୁଗଳ ଭଳି ଶୋଭା ପାଉଅଛୁ । ପୁଣି ସୁବର୍ଣ୍ଣ ଫରୁଆ ଭଳି ଅକ୍ଷୟ ଶୋଭା ଦଶୁଅଛୁ । ୧୮ ।

ସ୍ତନକୁ କନ୍ଦର୍ପର ୮ ଡମ୍ବୁରୁ ବୋଲି ଅଧମ ଲୋକେ କହନ୍ତି । ଏ କୁଚ ସଞ୍ଚିତ ହୋଇ ଘଞ୍ଚ ଏବଂ କର୍କଶ ହୋଇଅଛୁ । ସେ ଡମ୍ବୁରେ ଏତେ ଉପମା ଘଟି ନାହିଁ । ୧୯ ।

୯ ମହାଦେବ ନିଜର କ୍ରୋଧ ସବୁ ବିନାଶ କରି ଉରଜରେ ଆଧିପତ୍ୟ ଦେଖାଇ ରସ ରଚନ ସୀତାଙ୍କର କ୍ରୀଡ଼ା ସ୍ଥଳରେ ରମ୍ୟତା ପ୍ରାପ୍ତ ହେବାରୁ ରହିଛନ୍ତି ବୋଲି ୧୦ ଏମନ୍ତ ସମସ୍ତେ କହନ୍ତି । ୨୦ ।

ସୀତାଙ୍କର ୧ ରକ୍ତବର୍ଣ୍ଣ ପାଦ ନୂଆପଲ୍ଲବ ପରି କହନ୍ତି, କିନ୍ତୁ ନବ ପଲ୍ଲବ ଅଳ୍ପ ସମୟ ରକ୍ତବର୍ଣ୍ଣ ଧରଇ ଆଉ ଅଳତା ସମାନ ବୋଲି କହନ୍ତି । ମାତ୍ର ସେ ୧ ସର୍ବଦା ୩ ପାଦକୁ ନମସ୍କାର କରୁଅଛୁ ।୨୧।

ନଖ ଝଟକଇ ଅଲକ୍ଷ (୪) ଗମନ ଛନ୍ଦ (୫) ।
ଅଚଳ ଉପଳ (୬) ଉପର ଜନ୍ମ କରଇ ପଦ୍ମ ।୨୨।
ଚରଣ ପତନ ସ୍ଥଳର ରଣ ରଣ ଭ୍ରମର ।
କହଇ ଏ ସ୍ଥଳ କମଳ (୭) ରସ ଗନ୍ଧର ଘର ।୨୩।
ଏମନ୍ତ ବଚନ ରଚନ କର ଭ୍ରମଣ ବନ ।
ଧନର ଗମନପ୍ରସଙ୍ଗ ସକଳର କଥନ । ୨୪ ।
ଏକ ରକ୍ଷ (୮) ଦଶବଦନ ଅଙ୍ଗ ଗତ ରହଇ ।
ବଳ ବନ୍ଧନ ଏଣ (୯) ମତ ଇତସ୍ତତ (୧୦) କହଇ । ୨୫ ।
ଗଗନ (୧) ପଥଗତ (୨) ରଥ ପତ୍ରରଥ (୩) ସ୍ୱଚ୍ଛନ୍ଦ (୪) ।
ଯଜ୍ଞ ଅନ୍ନ ଗତ ଶ୍ୱପଚ (୪) ହସ୍ତ ଦଇବ ମନ୍ଦ ।୨୬।
ରଞ୍ଜନ ଉତ୍ତର ଶ୍ରବଣ କ୍ଷଣେ ଦେଗ ବରଦ (୫) ।
ଉପଇନ୍ଦ୍ର ଭଞ୍ଜ ଶରଣ ଭବଭୟଘ୍ନ (୬) ପଦ ।୨୭।

———

ବୃନ୍ଦାବନରେ ନଖମାନଙ୍କର ଯେଉଁ ଝଟକ ତାକୁ ଦେଖିଲେ ୪ ଉପମା ଦେବାକୁ କିଛି ମିଳୁନାହିଁ । ପର୍ବତ ଉପରେ ଥିବା ପଥର ମାନଙ୍କରେ ନଖ-ସ୍ପର୍ଶଯୋଗେ ପଦ୍ମ ଜାତହୁଏ ଏହା ୫ ମିଥ୍ୟା ନୁହେଁ । ୨୨ ।

ଗୋଡ଼ ପଡ଼ିବା ସ୍ଥାନରେ ଭ୍ରମରମାନେ ଗୁଣୁ ଗୁଣୁ ଶବ୍ଦକରି କହୁଅଛନ୍ତି କି ଏ ରସ ଗନ୍ଧର ଖଣି, ସ୍ଥଳର ୭ ପଦ୍ମ ଅଟେ । ୨୩ ।

ଏହିପରି ବାକ୍ୟ କହି ଶ୍ରୀରାମ ବନସ୍ତରେ ବୁଲିଲେ । ସୀତାଙ୍କର ଗମନର ବିଷୟ ସବୁ କହିଲେ ।୨୪।

ଦଶାନନ ନାମକ ଗୋଟାଏ ରାକ୍ଷସ ଅଛି । ସେ ଭାରି ବଳବନ୍ତ ! ବିଶେଷତଃ ତାହାଠାରେ ୯ ମୋହର ଅଙ୍ଗ ମୃଗବନ୍ଧନ ମତକୁ କହିକରି ୧୦ ଏଣେ ତେଣେ ହୋଇପାରୁ ନାହିଁ । ୨୫ ।

ରାବଣ ୧ ଆକାଶବାଟେ ୨ ରଥ ଚଳାଇନେବାର ୩ ଜଟାୟୁ ୪ ନିର୍ମଳ କରି କହିଲା । ଯାଗ ଅନ୍ନକୁ ୫ ଚଣ୍ଡାଳର ହାତରୁ ଗଲାଭଳି ଅସୁର ହାତରେ ସୀତା ପଡ଼ିଲେ । ଏହି କାରଣରୁ ବିଧାତା ନିତାନ୍ତ ମନ୍ଦ ଅଟେ । ୨୬ ।

ରାମଚନ୍ଦ୍ର ଜଟାୟୁ ପାଖରୁ ସମସ୍ତ ଶୁଣି ସେ ପକ୍ଷୀକୁ ୫ ବର ଦେଲେ । ଭବ ୬ ଉପଦ୍ରବନାଶକାରୀ ଶ୍ରୀରାମଙ୍କର ପଦ୍ମ ପାଦରେ ଉପେନ୍ଦ୍ର ଭଞ୍ଜ ଶରଣାପନ୍ନ ହେଲେ । ୨୭ ।

—*—

## ଏକାଦଶ ଛାନ୍ଦ

### ରାଗ—କାଳୀ

ଗତ ମର୍କଟକଟକ (୧) ମଧ୍ଯ ଲକ୍ଷ୍ମଣ ଖରତର (୨)
ଜବ (୩) ଖଣ୍ଡଦ ତନଯ୍ନ (୪) ମଦ (୫) ମର୍ଦ୍ଦିନ ଏକ୍‌ଶର

ନଷଶ ଶଢ ରଞ୍ଜନ (୬) ବନ (୭) ଅର୍ଘ୍ୟ ବଦନ (୮) କର ।
ସନ୍ତର [୯] ଅମରସ (୧୦) ଅନ୍ତର ପ୍ରସନ୍ନ ଦର୍ଶନର ।୨ ।

ପ୍ଲବଗବର୍ଗ (୧) ସଙ୍ଗ ଲକ୍ଷ୍ମଣ ପରଶ୍ରବା (୧) ଗତ ।
ଘରବରନ (୩) ହରଷ ଧନ ଲଭ୍ୟକରକ (୪) ।୩।

ଖରବରଜ (୫) ସ୍ବଅବରଜ [୬] ଓଳଗ (୭) ପଦତଳ ।
ତଦ ଅନ୍ତର ଦର୍ଶନ କର ଭଲ୍ଲ (୯) ମର୍କଟବଳ ।୪।

---

## ଏକାଦଶ ଛାନ୍ଦର ଅର୍ଥ

ଲକ୍ଷ୍ମଣ ୨ ଅତଶୀଘ୍ର ୧ ଯାଇ କର୍ଷ୍କିନ୍ଧାରେ ପହଞ୍ଚିଲେ । ପ୍ରଥମେ ଗୋଟିଏ ଶର ବନ୍ଧବାରୁ ୪ ଖଣ୍ଡଦ ନାମକ ରାଜାଙ୍କର ପ୍ରତପାଳିତ ସୁଗ୍ରୀବର ୫ ଗର୍ବ ୩ ସେହିକ୍ଷଣି ବନାଶ କଲେ ।୧।

୬ ତାରା ଦେବୀ ୭ ଜଳ ଅର୍ଘ୍ୟ ଘେନି ଲକ୍ଷ୍ମଣଙ୍କର ପାଦ ପୂଜା କଲେ । ତାଙ୍କର ପୂଜା ଅର୍ଚ୍ଚନା ଦେଖି ଲକ୍ଷ୍ମଣ ୯ ପ୍ରସନ୍ନ ହେଲେ ଏବଂ ସେହିକ୍ଷଣି ଲକ୍ଷ୍ମଣଙ୍କର ୧୦ କ୍ରୋଧ ଅନ୍ତର ହେଲା । ୨ ।

୧ ବାନର ବଳସହିତ ଲକ୍ଷ୍ମଣ ୨ ମାଲ୍ୟବନ୍ତ ପର୍ବତକୁ ଆସିବାରୁ ୩ ରାମଚନ୍ଦ୍ର ଏମାନଙ୍କୁ ଦେଖି ୪ ଦରିଦ୍ର ଲୋକ ଧନ ପାଇଲା ଭଳି ଅତଶୟ ଆନନ୍ଦିତ ହେଲେ ।୩।

୫ ସୁଗ୍ରୀବ ଏବଂ ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ପାଦତଳେ ପ୍ରଣାମ କଲେ । ତହିଁ ଉତ୍ତାରେ ଶ୍ରୀରାମଙ୍କୁ ଭାଲୁ ଏବଂ ବାନର ସୈନ୍ୟ ସମସ୍ତ ଦର୍ଶନ କଲେ । ୪ ।

ଏମନ୍ତ ଜଡ଼ ରଞ୍ଜନ ଜଡ଼ (୯) ସମୟୁ ଉତପନ୍ନ (୧୦)
ଉତ୍ତର ଗନ୍ଧବହ (୧୧) ବହଇ କମ୍ପନ ଅପଘନ । ୫ ।

ମହକହଳ (୧୨) ଷଟ୍‌ଟକମ୍ବଳ ବଣକ ସର୍ବ ନର ।
ଅହ ଅଳପ (୧୩) ଲବକଳପ କରଇ ଅଧନର (୧୪) । ୬ ।

ବତ୍ସର ଅନ୍ତ [୧୫] ଅନ୍ତକ [୧୬] ମତ ଏକ (୧୭) ହରଷ ଭସ୍ମ ।୧୮।
ଘନ ଉନ୍ନତ ସ୍ଥନ ଶରଣ ଜନ ଲଭଇ ଉଷ୍ମ ।୭।

ଫଳ ଅଶନ ଖଗ (୧) ସସ୍ୱନ ନବ ଅର୍ଭକବତ (୨)
କରନ୍ତି ତୟୁ [୩] ରମ୍ୟ ଉଦୟୁ ଘନ ଦର୍ଶନ ହତ । ୮ ।

ତପସ [୪] ଘନ ତପ (୫) ଗହନ [୬]ଅବଳ (୭) ବଳବନ୍ତ ।
ବହନ (୮) ଶତଦଳଗହନ (୯) ଦହନ କର ସଢ । ୯ ।

---

ଏହିପରି ସମୟରେ ୯ ଶୀତକାଳ ୧୦ ପ୍ରବେଶ ହେବାରୁ ସମସ୍ତଙ୍କର ମନକୁ ହରଣ କଲା । ୧୧ ଉତ୍ତର ଦିଗରୁ ପବନ ବହି ଶରୀରକୁ କମ୍ପିତ କରିବାକୁ ଲାଗିଲା ।

ସେହି ଶାତସମୟରେ ଲୋକେ ୧୨ ଅତିଶୟ ବହଳ ଶୀତ ବସ୍ତ୍ର ଆବର କଲେ । ୧୩ ଦିନ ଶ୍ରେଷ୍ଠ ହେଲା ୧୫ ଧନହୀନ ଲୋକଙ୍କ ଅଳ୍ପ ସମୟ ଗୋଟିଏ କଳ୍ପଭଳି ଜଣାଗଲା । ୬ ।

୧୫ ବର୍ଷକାଳ ୧୬ ଯମ ସଦୃଶ ହୋଇ ବିଶେଷ ୧୭ ଲୋକଙ୍କର ଆନନ୍ଦକୁ ୧୮ ପୋଡ଼ି ଭସ୍ମ କରି ଦେବାରୁ ଘନ ଉନ୍ନତ ସ୍ଥାନରେ ଶରଣାପନ୍ନ ଲୋକେ ଉଷ୍ମତାକୁ ଲାଭ କଲେ । ୭ ।

୧ ଶୁକପକ୍ଷୀମାନେ ୨ ଅଭିନବ ଶିଶୁପରି ଶବ୍ଦ କରିବାକୁ ଲାଗିଲେ । ୩ ରାତ୍ରିମାନଙ୍କର ସୁନ୍ଦରପଣ ବଢ଼ିଲା । ମେଘ ଅଦୃଶ୍ୟ ହେଲା । ୮ ।

୬ ଋଷିଗଣ ୬ ଅରଣ୍ୟରେ ୫ ପ୍ରବଳ ତପସ୍ୟା କଲେ । ଶୀତ ବଳବାନ ଲୋକଙ୍କୁ ୭ ବଳହୀନ କଲା । ୮ । ଚଞ୍ଚଳ ପଦ୍ମବନକୁ ଶିଶିରଦ୍ୱାରା ସ୍ୱତଃ ସିଦ୍ଧରେ ଦଗ୍ଧକରି ପକାଇଲା । ୯ ।

ରତ ବଧ୍ଵଳ (୧୦) ମତ୍ତ ଭ୍ରମଳ (୧୧) ଏ ଦାରୁଣକ କ୍ଷଣ ।
ଭ୍ରମଣ ବନ ଇଚ୍ଛଇ ବବଦହନ (୧୨) ସ୍ମରଣ ।୧୦।

ନବ ଦଇବ ଘଣ ବହଇ ଏ ସମୟର ସ୍ବର (୧)
ବହୁ ଜନଙ୍କ (୨) କରଇ ଏକ ପଲ୍ୟଙ୍କ ଶୟନର ।୧୧।

ରଖଇ ଜନ ଢଣ ଅନଳ ମଧ୍ୟର ଛତପର ।
ଚନ୍ଦ୍ର ଚନ୍ଦନବର ରଞ୍ଜନ କର ତପନକର (୩) ।୧୨।

ଏ ସମୟର ମର୍କଟବର (୪) ଅଗ୍ରତ ଖରପର (୫) ।
କଟନ ରମ୍ୟତର (୬) ଉତ୍ତର ମମ ଶରଣକର (୭) । ୧୩ ।

ଜନ୍ମତଜନ (୮) ଗର୍ବଗଞ୍ଜନ ସମସ୍ତ ପରକଟ
ଅନଳ (୯) ତପ୍ତ ଇଚ୍ଛକ (୧୦) ସପ୍ତବପୁ (୧୧) ଏମନ୍ତ କଷ୍ଟ । ୧୪ ।

---

୯ ସ୍ନେହରତ ମତ୍ତ ୧୦ ଭ୍ରମରମାନେ ଏହିପରି କେତେ ବନସ୍ଥରେ ବୁଲି ବୁଲି ୧୧ ମୃତ୍ୟୁ ଇଚ୍ଛା କରି ଦାବାଗ୍ନିରେ ନିଜ ଶରୀରକୁ ପୋଡ଼ିଲେ ।୧୦ ।

୧ କନ୍ଦର୍ପ ନୂଆ ଦୈବପଣ ବହି ପଲ୍ୟଙ୍କରେ ଶୋଇଥିବା ୨ ବେନି ଜନଙ୍କୁ ଏକ ଶରୀର ଭଳି କରିଦେଲା । ୧୧ ।

ଯେଉଁ ପରି ପ୍ରାଣରକ୍ଷା ଲାଗି ଲୋକମାନେ ଜଳରେ ବଣ ହୋଇଥାନ୍ତି ସେହିପରି ନିଆଁକୁ ମଝିରେ ରଖି ଏହି ସମୟରୁ ରକ୍ଷା ପାଇଲେ । ପୁଣି ଚନ୍ଦ୍ର ଓ ଚନ୍ଦନର ଶୀତଳତା ପରି ୨ ସୂର୍ଯ୍ୟକିରଣ ଅତିଶୟ ସୁଖଦାୟକ ବୋଧ ହେଲା । ୧୨ ।

୫ ଶ୍ରୀରାମ ଏହି ସମୟରେ ୪ ସୁଗ୍ରୀବକୁ ମନୋହର ବାକ୍ୟ ଦ୍ଵାରା ମୋହର ୬ ଅନୁସରଣ କର ବୋଲି କହିଲେ । ୧୩ ।

୮ ବଡ଼ ଲୋକଙ୍କର ଗର୍ବଗଞ୍ଜନ ସମସ୍ତ ପ୍ରକାଶ ହେଲା ୧୧ ସୂର୍ଯ୍ୟଙ୍କୁ ଏ ଭଳି କଷ୍ଟ ହେଲା ଯେ ୧୦ ସେ ନିଜର ଅଙ୍ଗକୁ ଉଷ୍ଣ ରଖିବା ଇଚ୍ଛାରେ ୯ ଅଗ୍ନି କୋଣକୁ ଆଶ୍ରୟ କଲେ । ୧୪ ।

ଜଳ ମଧ୍ୟସ୍ଥ ଉଷ୍ମର ଅର୍ଥ ପ୍ରଚଣ୍ଡ ଧନଞ୍ଜୟ (୧୨) ।
ବସ୍ତ୍ର ଉଡ଼ଣ [୧୩] କର ଇନ୍ଧନ (୧୪) ବ୍ରହ୍ମର ଛନ୍ନଭୟ (୧୫) ।୧୫।

ଏ କଷ୍ଟ ନ ସମର୍ଥ (୧) ବଳକଳ ପଞ୍ଚ କରଚ ମନ ।
ହରଇ ଧନ ଅଙ୍ଗ ବସନ ପଣତ [୨] ସପଟନ । ୧୬ ।

ଏ ବଡ଼ ବଣ୍ଡ ଖଣ୍ଡନ ଚଣ୍ଡକର ନନ୍ଦନ (୩) ଜବ ।
ସ୍ମର ଜଡ଼ଇ (୪) କଷଣ ହର ତର ବରଗ [୫] ଜବ । ୧୭ ।

ଛଇଳରହ୍ନ ରହ ନଗର (୬) ତର (୭) କଥନ କ୍ଷଣ ।
ସକଳ ଗଢ଼ (୮) ରଣ ଅନର୍ଥ ରଚନ ଧର୍ମପଣ । ୧୮ ।

କମଳ ଜଳ (୯) ପଦ୍ମ କମଳ (୧୦) କମଳ ଏଣଭୁଜା (୧୧) ।
ଚନ୍ଦ୍ର ଶଢ଼କ ଶଶମଣ୍ଡନ (୧୨) କନକ (୧୩) ଜଡ଼ରଜ (୧୪) ।୧୯।

---

ଏବଂ ପ୍ରଚଣ୍ଡ ଶୀତକୁ ଉପ୍ୟକର ୧୨ ଅଗ୍ନି ଉଷ୍ଣ ନମିତ୍ତ ଜଳମଧ୍ୟସ୍ଥ ହେଲେ ଏହା ଦେଖି ୧୪ ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥ ମହାପ୍ରଭୁ ୧୫ ଭୟରେ ବସ୍ତ୍ରଦ୍ୱାରା ଶ୍ରୀଅଙ୍ଗ ଘୋଡ଼ାଇ ରଖିଲେ । ୧୫ ।

ହେ ମୈତ୍ର ସୁଗ୍ରୀବ ! ତୁମ୍ଭେ ବସ୍ତ୍ର ଦେଖ ବୃକ୍ଷର ବକ୍କଳରେ ଆବୃତ ହେବା ଲୋକ ଏହି ଶୀତର କଷ୍ଟ ସହ୍ୟ କରିବାକୁ ୧ ପାରନ୍ତି ନାହିଁ । କିନ୍ତୁ ୨ ସୀତାଙ୍କର ତ୍ୟକ୍ତ ଲୁଗା କାନକ ମୋ ଦେହରେ ଦେଇ ଏ କଷ୍ଟ ହରଣ କରୁଅଛୁ । ୧୬ ।

୩ ହେ ସୁଗ୍ରୀବ ! ଆମ୍ଭର ଏ ଯେଉଁ ବନ୍ଧନ ଏହାକୁ ଶୀଘ୍ର ମୋଚନ କର । ଏବେ କନ୍ଦର୍ପ ଏବଂ ୪ ଶୀତ ଏମାନଙ୍କର ଦେଉଛନ୍ତି ଯେ କଷ୍ଟ ତାହା ବିନାଶ କର । ପୁଣି ଶୀଘ୍ର ୫ ଦୂତକୁ ପ୍ରେରଣ କର । ୧୭ ।

ସୀତା ୬ କେଉଁ ନଗରରେ ରହିଅଛନ୍ତି ୭ ଦୂତଠାରୁ ସେ କଥା ଶୁଣିବା ମାତ୍ରେ ୮ ସୈନ୍ୟ ଘେନ ସମସ୍ତେ ଯାଇ ଯୁଦ୍ଧ ଆରମ୍ଭ କରିବା ଉଚିତ ଧର୍ମ ଅଟେ । ୧୮ ।

୯ ଜଳ ୧୦ ପଦ୍ମ ୧୧ ଏଣଭୁଜ ଏମାନଙ୍କୁ କମଳ କହନ୍ତି, ଏବଂ ୧୨ ଚନ୍ଦ୍ର ୧୩ ସୁବର୍ଣ୍ଣ ୧୪ କର୍ପୂରଧଳ ଏମାନଙ୍କୁ ଚନ୍ଦ୍ର କହନ୍ତି । ୧୯ ।

ଏମନ୍ତ ଭବ (୧୫) ଅନନ୍ତ (୧୬) ମମ ଧନ ଶବଦ ଧର [୧୭] ।
ଭଜଇ ଦଶକନ୍ଧ ଏମନ୍ତ ଏତ ଅବଧ ଘର (୧୮) ।୨୦।

ସର୍ବ ସମ୍ମତ ଏମନ୍ତ ମତ (୧) ଗତ ମର୍କଟ ଭଟ (୨)
ମଳୟ ନଗ ଧବ (୩) ଉଦୟ (୪) ଅସ୍ତ (୫) ପର୍ଯ୍ୟନ୍ତ କଣ୍ଠ ।୨୧।

ଏ ଅନ୍ତ ପ୍ରଭଞ୍ଜନ ନନ୍ଦନ (୬) ସଙ୍ଗ ଈଶ ଜଗତ (୭) ।
କଥନ ଧନ ମଦ୍ବରଞ୍ଜନ ଗତ ରହସ୍ୟ ସତ ।୨୨।

ଆଶୟ ।

ମମ ଉତ୍ସଙ୍ଗ [୮] କରଇ ରଙ୍ଗ (୯) ଧନ ରହସ୍ୟ ଅର୍ଥ ।
ଦର୍ଶନ କ୍ଷଣ ମତ୍ତ ନର୍ତ୍ତନ ଷଣ୍ଡଲପନରଥ (୧୦) । ୨୩ ।

କର ବର୍ଣ୍ଣନ ଏମନ୍ତ ବର୍ଣ୍ଣ ଉଜ୍ଜ୍ୱଳ ଗଣ୍ଡସ୍ଥଳ ।
ନୟନ ଜଳ ଜର୍ଜ୍ଜର ବଶ ବସ୍ତ୍ରଘର୍ଷଣ ଫଳ (୧୧) ।୨୪।

---

ଏହିପରି ୧୫ ସଂସାରରେ ମୋହର ସୀତାର ନାମକୁ ୧୬ ଅନେକେ ୧୭ ଧାରଣା କରିଅଛନ୍ତି କିନ୍ତୁ ଏପରି ଶତ୍ରୁ ହେବା ଇଚ୍ଛାରେ ୧୮ ବଧ ଅଯୋଗ୍ୟ ସୀତାଙ୍କୁ ରାବଣ ନେଇଅଛି । କେବଳ ସେହି ସୀତାଙ୍କୁ ଅନୁସନ୍ଧାନ କର । ୨୦ ।

୧ ଏହି ବସ୍ତୁର ସର୍ବସମ୍ମତ ହେବାରୁ ମର୍କଟ ୨ ସୈନ୍ୟ ସବୁ ମଳୟ ୩ ହିମାଳୟ ୪ ଉଦୟାଚଳ ୫ ଅସ୍ତାଚଳ ଯାଏ ସୀତାଙ୍କୁ ଖୋଜିବା ଲାଗି ଶଙ୍କୁ ନିର୍ଦ୍ଧାରିତ ଏବଂ ସେହି ପର୍ଯ୍ୟନ୍ତ କରି ଯାତ୍ରା କଲେ । ୨୧ ।

ଏଥି ଉତ୍ତାରୁ ୬ ରାମଚନ୍ଦ୍ର ୭ ହନୁମାନ ସଙ୍ଗ ହୋଇ ସୀତାଙ୍କର ମନୋହାରିତା ଏବଂ ଗତରହସ୍ୟ କଥାମାନ ସତ୍ୟକରି କହିଲେ । ୨୨ ।

ସୀତା ରହସ୍ୟ ହେଲୁ ୮ ମୋହର କ୍ରୋଡ଼ରେ ଯେଉଁ ସମୟରେ ୯ କ୍ରୀଡ଼ା କରେ ସେତେବେଳେ ୧୦ ମୟୂର ତାହା ଦେଖି ଉନ୍ମତ୍ତ ହୋଇ ମୋହର ଅଙ୍ଗକୁ ମେଘ ସଦୃଶ ମଣି ଏବଂ ସୀତାଙ୍କୁ ବିଜୁଳି ମନେ କରି ନୃତ୍ୟ କରେ ।୨୩।

ଅତଏବ ଉଜ୍ଜ୍ୱଳ ଗଣ୍ଡସ୍ଥଳର ଯେଉଁ ବର୍ଣ୍ଣ ସେ ନୟନ ଜଳରେ ଜର୍ଜ୍ଜର ହେବାରୁ ବସ୍ତ୍ର ୧୧ ଘର୍ଷଣ ହେଉଛି ରକ୍ତବର୍ଣ୍ଣ ହୋଇଥିବାର ଦେଖିବ । ୨୪ ।

ସ୍ତନ ଗଞ୍ଜନ ଇଚ୍ଛକ ବଡ଼ ବଡ଼ ପର୍ବତଗଣ ।
ସହନ୍ତ [୧] ଜଡ଼ ତପନକର (୨) କଷଣ ବରଷଣ (୩) ।୨୫।

ହର ଭକତ ରଜତ ପ୍ରସ୍ତର (୪) ଫଳ ଏସମୟେ ।
ବହିଲ ଧନ ଉରଜ [୫] ସମ ରମ୍ୟ ଭଖ ଏ ଲୟେ ।୨୬।

ଅଦ୍ଭୂତ ।

ଗତ ଏମନ୍ତ ସମୟେ ସତ ସକଳ ଶଶଧର [୬] ।
ଅନବରତ ଉଦୟେ ଅସ୍ତ ନବତପନ (୭) ପର । ୨୭ ।

ଦର୍ଶନ କର ଏସମୟର ଏମନ୍ତ ଅସମ୍ଭବ ।
ରକତପଦ୍ମ ମଧ୍ୟ (୮) କ୍ଷପୁନ ଅର୍ଦ୍ଧନକ୍ଷତ୍ରଧବ (୯) । ୨୮ ।

---

ବଡ଼ ବଡ଼ ପର୍ବତ ସବୁ ସୀତାଙ୍କର ସ୍ତନ ଗଞ୍ଜନକୁ ଇଚ୍ଛାକରି ଅତି ଜଡ଼ ହେବାରୁ କ୍ରମ ଓ ୨ ସୂର୍ଯ୍ୟକିରଣ ଏବଂ ୩ ବର୍ଷା ୧ ସହ୍ୟ କରି କଷ୍ଟ ପାଉଅଛନ୍ତି । ୨୫ ।

୪ ରୁପା ପର୍ବତ ହରଙ୍କର ଭକ୍ତ ହେବାରୁ ଏହି ସମୟରେ ସଫଳ ହେଲା, ଏଥିପାଇଁ ୫ ସୀତାଙ୍କର କୁଚ ସେହିଭଳି ଶୋଭାକୁ ବହିଅଛି । କାରଣ ସୀତାଙ୍କ ସ୍ତନ ବରହଯୋଗୁଁ ରୁପ ଭଳି ହୋଇଥିବା ଏଥିଯୋଗୁଁ ସମାନହେଲା ଏହା ଲକ୍ଷ୍ୟ ରଖିଥିବ । ୨୬ ।

୬ ଅର୍ଦ୍ଧଚନ୍ଦ୍ର ସର୍ବଦା ଉଦୟାସ୍ତ ୭ ବାଳସୂର୍ଯ୍ୟ ଉପରେ ସ୍ୱତଃସିଦ୍ଧରେ ପ୍ରକାଶ ହେବାର ସମୟଗତ ହେଲାଣି । ଏଠାରେ ଓଷ୍ଠ ବାଳସୂର୍ଯ୍ୟ ହାସ ଅର୍ଦ୍ଧଚନ୍ଦ୍ର ଲକ୍ଷଣ କବି କରିଅଛନ୍ତି । ୨୭ ।

ବର୍ତ୍ତମାନ ଏହା ସୀତାଙ୍କ ଠାରେ ଅସମ୍ଭବ ହୋଇଥିବାର ଦେଖିବ । ଅର୍ଥାତ୍ ୮ ରକ୍ତ ପଦ୍ମର ମୁଖରେ ୯ ହାସ ଅର୍ଦ୍ଧଚନ୍ଦ୍ର କ୍ଷପୁନ କରିଥିବ ଅର୍ଥାତ୍ ମୁଖ ହାସଶୂନ୍ୟ ହୋଇଥିବ । ୨୮ ।

କହ ପ୍ରଥମ ସଙ୍ଗ ସମସ୍ତ ଉଭୟଙ୍କର ସତ୍ୟ ।
ମହ ମଧ୍ୟସ୍ଥ ଜ୍ୱଳଧ୍ୱଜ [୧] ଉପର କର ଦଣ୍ଡ ।୨୯।

ପରସ୍ପରର ଅନ୍ୟ ଶରଣ ଅଛଇ ଏ ଜଗତ ।
ଅନ୍ତରଗତ (୨) କଣ ଅନ୍ତର ନକର ସତ୍ୟବ୍ରତ ।୩୦।

କହ ଏମନ୍ତ ଭବ୍ୟ ଜଗତ ଜନ ବଚନ ସ୍ୱଚ୍ଛ (୩) ।
ତବ ସ୍ୱପତ ଧବ ସ୍ୱପଦ କଥନ ଅଗ୍ର ପଛ ।୩୧।

ଉଭୟ ଜନ ଜନମ ଜନ୍ମ ଏମନ୍ତ କର୍ମବନ୍ତ ।
ଏ ବଢ଼ ରଙ୍ଗ ନ କର ଭଙ୍ଗ ବଲ୍ଲଭ (୪) ଇତସ୍ତତଃ ।୩୨।

ଏ ଅନନ୍ତର କରପଲ୍ଲବ ମଣ୍ଡନ (୧) ଦଇକର ।
ଏ ସମ ଦଣ୍ଡ ଶମ ଉଦଣ୍ଡ କହ ଉଚ୍ଛନ୍ନ ହର ।୩୩।

---

ହେ ହନୁମାନ ! ସୀତାଙ୍କ ସଙ୍ଗରେ ମୋହର ପ୍ରଥମ ସଙ୍ଗମ ବେଳେ ଦୁହିଙ୍କ ମଧ୍ୟରେ ଯେଉଁ ସତ୍ୟ ସେ ସମୟରେ ପ୍ରଜ୍ୱଳିତ ଅଗ୍ନିକୁ ସାକ୍ଷ୍ୟ କରି ସେଥିରେ ହସ୍ତ ଦେଇ ନିୟମ କରିଥିବା କଥା ସୀତାଙ୍କୁ କହିବ ।୨୯।

ତୁମ୍ଭ ଦୁହିଙ୍କର ଏ ଜଗତ ମଧ୍ୟରେ ଅନ୍ୟ ଶରଣ ଅଛି କି ? ତୁମ୍ଭର ୨ ଅନ୍ତଃକରଣରୁ ସତ୍ୟବ୍ରତ ଅନ୍ତର କରିବାରେ କଣ ନ ହୁଅ ।୩୦।

ଜଗତର ଲୋକମାନେ ଉତ୍ତମ ଅଟନ୍ତି । ତାଙ୍କର ଯେଉଁ ୩ ନିର୍ମଳ ବାକ୍ୟ ତହିଁରେ ତୁମ୍ଭର ସ୍ୱାମୀଙ୍କର ଯେଉଁ ସ୍ୱପଦ ତାହା ଆଗପଛ କରି କହୁଛନ୍ତି । ଅର୍ଥାତ୍ ଆଗରେ ସୀତା ପଛରେ ରାମ ବୋଲି କହନ୍ତି ।୩୧।

ତୁମ୍ଭ ଦୁଇଜଣ ଜନ୍ମଜନ୍ମାନ୍ତରେ ସୁଦ୍ଧା କର୍ମବନ୍ତ ହୋଇ ଅବତାର ହୁଅ, କିନ୍ତୁ ବର୍ତ୍ତମାନ ଏ ଯେଉଁ ବଢ଼ରଙ୍ଗ (ଅନୁରାଗ), ଭଙ୍ଗ ନ କର । ୪ ଶ୍ରୀରାମ ଏଣେ ତେଣେ ହେଉଛନ୍ତି ।୩୨।

ଏଥିଉତ୍ତାରୁ ଶ୍ରୀରାମ ୧ ମୁଦ୍ରିକା ହନୁମାନଙ୍କୁ ଦେଇ କହିଲେ ସୀତାଙ୍କ ନିକଟରେ ସମ୍ବାଦ କହି ଏ ସମୟରେ ଯେଉଁ ବୃହତ୍ ଉତ୍କଣ୍ଠା ତାକୁ ହରଣ କରି ଶାନ୍ତ କରାଅ ।୩୩।

କର ଅଙ୍ଗଦ ସଙ୍ଗ ଗମନ ତଗ ସପତ ଜନ ।
କଣ୍ଠ ପଇଠ (୨) ନ କର ମଠ (୨) ରଖ ଏ ଚନମନ ।୩୪।
ଏଅନ୍ତରର (୪) ଗମନ ଖର ପଥର (୫) ଉପଗତ (୬)
କରଇ ମତ ଏକ ଅସ୍ତ୍ରପ ଜବ କରଜ ହତ । ୩୫ ।
ବନ ପର୍ବତ କନ୍ଦର ସର୍ବ କଟକ (୮) ଖର୍ବଟକ (୯)
ଅତ୍ୟନ୍ତ କର ଗମନ ପର ସମଦ ଏକ ଏକ ।୩୬।
ସପ ନଗରବତ ରନ୍ଧ୍ର ଦର୍ଶନ ଏକ ସ୍ଥଳ ।
ଲଭ୍ୟ ଉବନ୍ତ ସ୍ୱର୍ଣ୍ଣନଗରଗତ ଦଇବବଳ ।୩୭।
ଏ ସମସ୍ତର ଗତ ମକର (୧) ଅଙ୍ଗଦ ବଢ଼ ଛନ୍ନ ।
ମରଣ ଅର୍ଥେ ମନ ସମର୍ଥ କରଣ ଅନଶନ (୨) ।୩୮।
ଏକ ପତଙ୍ଗ ୩ ସପକ୍ଷ ୪ ଅଙ୍ଗ କଥନ ସୁମଙ୍ଗଳ ।
ଲଙ୍କ କଟକ ବର୍ତ୍ମ (୫) ଦର୍ଶନ କର ସପକ୍ଷ ବଳ ।୩୯।

---

ଅଙ୍ଗଦ ସଙ୍ଗରେ ତୁମ୍ଭେ ସାତଜଣ ଯାଅ; କିନ୍ତୁ ୩ ବିଳମ୍ବ ନ କରି କଣ୍ଠ ଋତରେ ଆସି ଏଠାରେ ୨ ପ୍ରବେଶ ହେବାର ଚନ୍ମନା ଥୁଅ ।୩୪।

ଏଥିଉତ୍ତାରୁ ୪ ଦୂତମାନେ ଚଞ୍ଚଳ ଗମନ କଲେ ୫ ବାଟରେ ଏକ ରାକ୍ଷସ ପରିପନ୍ଥୀ ହେବା ଇଚ୍ଛାରେ ୬ ଉପସ୍ଥିତ ହେଲା । ତାକୁ ଶୀଘ୍ର ନାଶକରି ଗମନ କଲେ ।୩୫।

ବନସ୍ଥ,ପର୍ବତଗହ୍ୱର ୯ ପର୍ବତ ପାଖର ଗ୍ରାମ ଓ ନଗର ଏହିପରି ସ୍ଥାନମାନଙ୍କରେ ଅତି ଗର୍ବଯୁକ୍ତ ହୋଇ ଏକ ଏକ ହୋଇ ଚଞ୍ଚଳ ଗମନକଲେ ।୩୬।

ସର୍ପନଗର ପରି ଗୋଟିଏ ସ୍ଥାନରେ ଏକ ରନ୍ଧ୍ର ଦେଖିଲେ । ସେହିଠାରୁ ବାର୍ତ୍ତା ମିଳିଲା ଯେ ସୀତା ଦୈବଯୋଗୁଁ ଲଙ୍କାପୁରକୁ ଗତ ହୋଇଅଛନ୍ତି । ତୁମ୍ଭେମାନେ ସେ ସ୍ଥାନକୁ ଗମନ କର । ୩୭ ।

ଏହିପରି ୧ ଶୀତକାଳ ବିତିଯିବାରୁ ଅଙ୍ଗଦ ଅତିଶୟ ଭୟ ପାଇ ମରଣ ନିମନ୍ତେ ସମର୍ଥ ହୋଇ ୨ ନିରାହାରୀ ହେଲେ ।୩୮।

୩ ଏକ ପକ୍ଷୀ ଅର୍ଥାତ୍ ସମ୍ପାତି ଏ ଦୂତମାନଙ୍କୁ ଦେଖିବାରୁ ତାହାର ଦେହରେ ୪ ପକ୍ଷସବୁ କଅଁଳ ଉଠିଲା । ତହୁଁ ସେ ନିଜର ଅଙ୍ଗର କଥା କହିଲା ଏବଂ ନିଜର ଡେଣାରେ ସେ ସାତଜଣଙ୍କୁ ବସାଇ ଲଙ୍କାକୁ ଯିବା ୫ ବାଟ ଦେଖାଇ ଦେଲା ।୩୯।

ଗମନ ମନକର (୬) ପବନ ନନ୍ଦନ (୭) ଉଚପର ।
କହଇ ଉପଇନ୍ଦ୍ର ଏ ରସ ଜନ ହରଷକର ।୪୦।

---

## ଦ୍ୱାଦଶ ଛାନ୍ଦ

(ରାଗ—କଳଶା)

ଏ ସମସ୍ତ ବସନ୍ତ ରଞ୍ଜନର ସମସ୍ତ ।
ହରଷକର ସନ୍ତତ ଜନ୍ତୁ ବର ଚସ୍ତ (୧) ।୧।

ଜମ୍ଭପର (୨) ମଳୟ ଗମନ ଚଚପର ।
ପବ୍ଭ ଭବ ୩ କ୍ରନ୍ଦନଗ ୪ ପର ବସ କର ।୧।

ବନ ଭ୍ରମଣ (୫) ରଚନ ଧନବନ୍ତ ନର ।
ପ୍ରଭଞ୍ଜନ (୬) ଉଞ୍ଜନ ବ୍ୟଜନ (୭) ସବ କର ।୩।

---

୭ ହନୁମାନ ଚଞ୍ଚଳ ହୋଇ ଲଙ୍କାକୁ ଯିବା ଲାଗି ୬ ଇଚ୍ଛା କଲେ । ଜନମାନଙ୍କର ହର୍ଷପ୍ରଦ ହେବ, ଅତଏବ ଏହା ଉପେନ୍ଦ୍ର ଭଞ୍ଜ କବି କହିଲେ ।

---

## ଦ୍ୱାଦଶ ଛାନ୍ଦର ଅର୍ଥ

ଏଥିଉତ୍ତାରେ ବସନ୍ତ ସମସ୍ତ ରସମସ୍ତ ହୋଇ ରଞ୍ଜନ ହେଲା ଏବଂ ସର୍ବଦା ୧ ବୃକ୍ଷମାନଙ୍କୁ ହର୍ଷପ୍ରଦାନ କଲା ।୧।

୨ ଇନ୍ଦ୍ର ଚଞ୍ଚଳ ହୋଇ ମଳୟଗିରିକୁ ଗମନ କଲେ ୩ ବିଧାତା ୪ ଗନ୍ଧର୍ବମାନଙ୍କ ପର୍ବତ ଉପରେ ଯାଇ-ବାସ କଲେ ।୨।

ଧନବନ୍ତ ଲୋକେ ୫ ପୁଷ୍ପଉଦ୍ୟାନରେ ବିଚରଣ କଲେ ୬ ପବନ ୭ ଦକ୍ଷିଣା ପଙ୍ଖା ହାୱ ରଞ୍ଜି ହେବାରେ ଲୋକେ ହସ୍ତରେ ଯେନ ବାନ୍ଧି ହେଲେ ।୩।

ସହଜ ମଦନ ସଖ ସହ ସରଞ୍ଜନ ।
ନରଧବ ପଦର ଉପୂଦ ଏକ ଜନ ।୪।

ଏ ସମସ୍ତ ପବନନନ୍ଦନ ଛଚପର ।
ଅମର ବର୍ମ୍ମ'ର (୮)ଅପହର (୯) ଉପୃଙ୍କର ।୫।

ଉତ୍ତମ ବଳ (୧୦) ନଗ [୧୧]ର ପର ଶ୍ରମହର (୧୨) ।
ନଗର ଗଡ ବହୁ ସବର ଚଡପର ।୬।

ତଣକଛ ବଦନ (୨) ନଗରର ମଧ୍ୟର ।
ଭ୍ରମଣ କର ପବନ ନନ୍ଦନ [୧] ସଙ୍ଗର ।୭।

ବର୍ଣ୍ଣନ କ୍ଷଣ ବଣ୍ଡକକର କରଚର [୧]
ଚଦନ୍ତର କଥନ ଉଦନ୍ତ ଯ (୪) ସକଳ । ୮।

ଜଷଣ ପଢ ବହକ [୫] ଦରବଣ ବନ (୬) ।
ଏ ଉପମ (୭)ଲଭ୍ୟକ ଜନ୍ମଅନ୍ଧ ନୟନ ।୯।

---

କନ୍ଦର୍ପ ନିଜର ସଖା ବସନ୍ତ ଓ ଚନ୍ଦ୍ର ସହ ସୁନ୍ଦର ଦିଶିଲ । ପୁଣି ନରଧବ ନାମ ଧରିବାରୁ ବିରହୀମାନେ ଖିନ୍ନ ହେଲେ । ନର ଧବ ଯେ ରାଜା ସେ ପ୍ରଜାମାନଙ୍କୁ ଉପୁ ଦେଖାନ୍ତି, ଏଠାରେ କନ୍ଦର୍ପରାଜା ବିରହି ମାନଙ୍କୁ ଉପୂଦ ହେଲ ।୪।

ଏହି ବସନ୍ତ କାଳରେ ପବନ ନନ୍ଦନ ବ୍ୟଗ୍ର ହୋଇ ଉପୃଙ୍କର ୮ ଆକାଶ ମାର୍ଗ ୯ ଅତିକ୍ରମ କରି ଗମନ କଲେ ।୫।

୧୦ ସୁବଳ ନାମକ ୧୧ ପର୍ବତ ଉପରେ ୧୧ ବିଶ୍ରାମ କରି ଗୋଷ୍ଠମାନଙ୍କ ସଙ୍ଗରେ ମିଶି ଶୀଘ୍ର ହୋଇ ଲଙ୍କାଗଡ଼କୁ ଗମନ କଲେ ।୬।

୧ ଲଙ୍କା ଦେବୀ ଲଙ୍କାଗଡ଼ରେ ଭ୍ରମଣ କରୁ ଥିବାରୁ ୨ ହନୁମାନ ତାକୁ ଦେଖିଲ ମାତ୍ରେ ୩ ଚାପୁଡ଼ା ପ୍ରହାର କଲେ । ତହିଁ ଉତ୍ତରେ ଲଙ୍କାଦେବୀ ଉପୂପାଇ ସୀତାଙ୍କର ସବୁ ୪ ସମ୍ବାଦ ପ୍ରଦାନ କଲେ ।୭। ।୮।

୬ ଅଶୋକ କାନନରେ ୪ ସୀତାଙ୍କୁ ହନୂମାନ ଭେଟିଲ ମାତ୍ରେ ଜନ୍ମାନ୍ଧ ଲୋକ ନୟନ ୭ ଲଭିଲା ଭଳି ଆନନ୍ଦିତ ହେଲେ ।୯।

ମଞ୍ଜୁଳ ଚକ୍ଷୁଣ କଥନ ପ୍ଳବଗ ଭଟ (୮) ।
ମନୁଭ ରଚନ ଦଶକନ୍ଧର (୯) କପଟ । ୧୦ ।
ରଢ ସ୍ଥଳର (୧୦) ପ୍ରସଙ୍ଗ ସକରମଣ୍ଡନ (୧୧) ।
ଦତ୍ତ କରକ ନୟନ ଜଳ ଅକଥନ । ୧୧ ।
ଉଦନ୍ତ କଥନ ଉର୍ଦ୍ଧ୍ୱ ରତ୍ନ (୧) ସମର୍ପଣ ।
ଗମନକର ପବନ ନନ୍ଦନ ଚକ୍ଷଣ । ୧୨ ।
ରମ୍ୟ ଗହନ (୨) ଦର୍ଶନ ଭଗ୍ନକର ଜବ (୩) ।
ରକ୍ଷ କର (୪) ଲଙ୍କବର (୫) ଲବ୍‌ଧ କର ରବ । (୬) । ୧୩ ।
ଅକଳନ (୭) ବଳ ଗତ ମରଣତ ଜବ ।
ଅକ୍ଷୟ (୮) କ୍ଷୟକ ଇନ୍ଦ୍ର ଜୟ (୯) ପଭରବ (୧୦) । ୧୪ ।
ଉରଗ ବନ୍ଧନ (୧୧) କର ନଗର ଜ୍ୱଳନ (୧୨) ।
ନବ ରଚନ ମୟ (୧୩) ଭବନ ସରଚନ (୧୪) । ୧୫ ।

---

ସୀତା ହନୁକୁ ଦେଖି ୯ ଏ କପଟ ରାବଣ ବୋଲି ବିଚାରି ମୌନ ହେଲେ । ଏହି ସମୟରେ ହନୁମାନ ସୀତା ରାମଙ୍କର ୧୦ କ୍ରୀଡ଼ାସ୍ଥଳର ବିଷୟ ବର୍ଣ୍ଣନା କରି ୧୧ ଶ୍ରୀରାମଙ୍କର କରଭୂଷିତ ମୁଦ୍ରିକା ପ୍ରଦାନ କଲେ । ତାହା ଦେଖିଲା କ୍ଷଣି ସୀତାଙ୍କ ଚକ୍ଷୁରୁ ଅବର୍ଣ୍ଣନୀୟ ଲୋତକ ପାତ ହେଲା । ୧୦ ।୧୧।

ତହିଁ ଉତ୍ତରେ ସୀତା ସମସ୍ତ ବିଷୟ କହି ୧ ମଥାମଣି ପ୍ରଦାନ କଲେ ।ପୁଣି ହନୁମାନଙ୍କୁ କହିଲେ ତୁମ୍ଭେ ଶୀଘ୍ର ଗମନ କର ।୧୨।

ହନୁମାନ ଯିବାବେଳେ ୨ ରମଣୀୟ ମଧୁବନ ଦେଖି ବୃକ୍ଷମାନଙ୍କୁ ୪ ଶୀଘ୍ର ଭାଙ୍ଗିବାକୁ ଲାଗିଲେ ୪ ଉଦ୍ୟାନ ରକ୍ଷକଗଣ ୬ ଅତି ଚଞ୍ଚଳରେ ସେ ବାର୍ତ୍ତା ୫ ରାବଣ ସ୍ଥାନରେ ଜଣାଇଲେ । ୧୩ ।

ରାବଣର ପୁଅ ୮ ଅକ୍ଷୟ ନାମକ ସେନାପତି ଏବଂ ୭ ଅସଂଖ୍ୟ ସୈନ୍ୟ ଘେନି ହନୁମାନଙ୍କୁ ମାରିବାକୁ ଯାଇ ହନୁମାନ ହାତରେ ମଲେ । ୯ ଇନ୍ଦ୍ରଜିତ ହନୁକୁ ୧୧ ନାଗଫାଶରେ ବାନ୍ଧି ୧୦ ଅପମାନ କରାଇଲା । ତହିଁ ଉତ୍ତରେ ହନୁମାନ ୧୨ ଲଙ୍କାଗଡ଼କୁ ପୋଡ଼ି ପକାଇବାରୁ ପୁନର୍ବାର ୧୩ ନୂଆ ହୋଇ ରତ୍ନମୟ ଗୃହମାନ ୧୪ ନିର୍ମାଣ ହେଲା । ୧୪ ।୧୫।

ପ୍ରଭଞ୍ଜନ ନନ୍ଦନ (୧୫) ଗଗନ କରି ଜବ ।
ନକ୍ଷତ୍ର ଈଶ ନନ୍ଦନ (୧୬) ସନ୍ନିକରି ସ୍ତବ (୧୭) । ୧୭ ।
ଜଗତ ମଙ୍ଗଳ (୧୮) କରି ଶ୍ରବଣରି ଘନ (୧୯) ।
ବଳ ସହ ପତଙ୍ଗ ନନ୍ଦନ (୨୦) ସଙ୍ଗମସନା । ୧୭ ।
ଅର୍ଣ୍ଣବତଟରେ (୨୧) ବନ ନଗ (୨୨) ରଙ୍ଗ କରି (୨୩) ।
ବର୍ତ୍ମନ ଅର୍ଥ (୨୪) ଶମ୍ବୁନତ ଅଣନକରି (୨୫) । ୧୮ ।
ଅସୁରପବର (୧) ଚର (୨) ଉଦନ୍ତ (୩) ଲବ୍ଧକରି ।
ଶ୍ରବଣ କ୍ଷଣ ଜବନ ହରଷ ସଞ୍ଚର । ୧୯ ।
ଏକ ଉଦର ଜନମ ଅବରଜ ବତ (୪);
ଅସହ୍ୟ ତ୍ୟକ୍ତ କଥନ ଶରଣ ତ ସନ୍ତ । ୨୦ ।
ଗମନ କରି ଜଗତଜନକ ପଦ୍ମର (୫) ।
ଦଣ୍ଡବତ କରି (୬) କଥନବ ଏ ଉତ୍ତର (୭) । ୨୧ ।

---

ତଦନ୍ତରେ ୧୫ ହନୂମାନ ଶୀଘ୍ର ଗମନ କରି ୧୬ (ତାରାଦେବୀ ପୁତ୍ର) ଅଙ୍ଗଦ ସଙ୍ଗରେ ଯାଇ ଶ୍ରୀରାମଙ୍କ ନିକଟରେ ସବୁ ବିଷୟ ୧୭ ଜଣାଇଲେ ।୧୬।

୧୮ ଶ୍ରୀରାମ ଶୁଣିବା କ୍ଷଣି ୧୯ ପ୍ରବଳ ସୈନ୍ୟ ଏବଂ ୨୦ ସୁଗ୍ରୀବ ସହିତ ଗମନ କରି ୨୧ ସମୁଦ୍ର କୂଳରେ ଥିବା ବନ ଓ ୨୨ ପର୍ବତରେ ୨୩ କ୍ରୀଡ଼ା କଲେ । ତତ୍ପରେ ସାଗର ମଧ୍ୟରେ ଲଙ୍କାକୁ ଯିବା ପାଇଁ ୨୪ ବାଟ ଦେବାକୁ ବରୁଣଙ୍କୁ ସ୍ତୁତି କରି ୨୫ ନିରାହାରରେ ଶୋଇ ରହିଲେ ।୧୭। ।୧୮।

୧ ରାବଣ ୨ ଦୂତଠାରୁ ୩ ଏହି ସମ୍ବାଦ ଶୁଣିପାରି ତାହାର ମନରେ ହର୍ଷ ଜାତ ହେଲା । ୧୯ ।

ତତ୍ପରେ ରାବଣର ୪ ସାନଭାଇ ବିଭୀଷଣ ସୀତାଙ୍କୁ ବାହୁଡ଼ାଇ ଦେବା ପ୍ରଭୃତି ଉପଦେଶପୂର୍ଣ୍ଣ ବାକ୍ୟ ସବୁ କହିବାରୁ ରାବଣ ତାହା ସହି ନ ପାରି ବିଭୀଷଣକୁ ଘରୁ ତଡ଼ି ଦେଇ କହିଲା ତୁ ମୋହର ନିନ୍ଦାକରି ଯାହାର ପ୍ରଶଂସା କରୁଅଛୁ ତାହାର ପାଖେ ଯାଇ ଶରଣ ପଶ । ୨୦ ।

ଏହାଶୁଣି ବିଭୀଷଣ ସେଠାରୁ ଯାଇ ୫ ଶ୍ରୀରାମଙ୍କ ପଦପଦ୍ମରେ ୬ ନମସ୍କାର କରି ୭ ରାବଣ ତାଙ୍କୁ ତଡ଼ିଦେବା କଥା କହିଲା ।୨୧।

ଯମଦର (୮) ପଟ୍ଟ ବସ୍ତ୍ର ମସ୍ତକ ବନ୍ଧନ
ପଦ ଦଲ୍ଲ (୯) କର ଜବ ଭବ ଲଙ୍କ ଇନ (୧୦) ।୧୨।
ଭୂପ୍ଟବ କରଣ ଜବ ରଚନକ ସ୍ତୁବ ।
ଜଳନର ଧବ (୧) କଥନକ ବମ୍ବ ଭବ (୨) । ୧୩ ।
ପ୍ଲବଗ (୩) ଭଲ୍ଲବର୍ଗ (୪) ନଗ [୫] ବନ୍ଧଇର [୬] ।
ନଳ ସ୍ପରଶର ତ [୭] ରହକ ଜଳପର (୮) । ୧୪ ।
ତରଣ (୯) ଲବଣଜଳ (୧୦) ଲଙ୍କ ସରବଚ (୧୧) ।
ପରସ୍ଥ (୧୨)`ସକଳ ବନ ଫଳଭକ୍ଷରତ (୧୩) ।୧୫।
ବଳ କଳନର (୧୪) ଲଙ୍କଧବ ଚଉପର (୧୫) ।
ମନ୍ତ୍ରଣ କରକ [୧୬] ଜବ ବରପଣକର (୧୭) । ୧୬ ।
ବନ୍ଧନ ପତନ (୧୮) ଖରପର (୧୯) ତ୍ୟକ୍ତକର (୨୦) ।
ଏଅନ୍ତ ଗମନ ଧନ୍ୟ ଧନ୍ୟ ଜନ୍ୟ କର (୨୧) । ୧୭ ।

---

୭ ବିଭୀଷଣର କଥା ଶୁଣି ରାମଚନ୍ଦ୍ର ୮ ଜଟାରେ ଥିବା ପାଟବସ୍ତ୍ର ସବୁ ବିଭୀଷଣର ମୁଣ୍ଡରେ ବାନ୍ଧି ଦେଇ ୧୦ ଲଙ୍କାର ନୃପତିପଦ ୯ ପ୍ରଦାନ କଲେ ।୧୨।

୯ ବରୁଣଙ୍କୁ ଭୟ ଦେଖାଇବାରୁ ବରୁଣ ଭୟପାଇ ସ୍ତୁତି ରଚନା କରି ୨ ମାର୍ଗ ପ୍ରସ୍ତୁତ ହେବା ବିଷୟ କହିଲେ । ୧୩ ।

ଚର୍ତ୍ତି ଦିଗରୁ ୩ ମର୍କଟ, ୪ ଭଲ୍ଲୁକମାନେ ୪ ପର୍ବତମାନ ଆଣି ନଳ ନାମକ ସେନାପତିଙ୍କୁ ସ୍ପର୍ଶ କରାଇବାରୁ ସେ ପର୍ବତ ସବୁ ୮ ଜଳ ଉପରେ ରହିବାରୁ ଅନାୟାସରେ ୬ ପୂର୍ଣ୍ଣରୂପେ ବନ୍ଧ ବନ୍ଧନ କଲେ ।୧୪।

୧୦ ଲବଣ ସମୁଦ୍ର ୯ ପାରି ହୋଇ ୧୧ ସୁବଳସ୍ୱା ପର୍ବତ ୧୨ ଉପରେ ପହଞ୍ଚିବା ଉତ୍ତାରେ ସୈନ୍ୟମାନେ ବନର ଫଳ ୧୩ ଭକ୍ଷଣ କରିବାକୁ ଲାଗିଲେ । ୧୫ ।

୧୫ ରାବଣ ଚଞ୍ଚଳ ହୋଇ ୧୪ ସୈନ୍ୟ ଗଣିବାକୁ ନଜର ୧୬ ଶୁକ ସାରଣ ନାମରେ ଦୁଇ ମନ୍ତ୍ରୀଙ୍କୁ ଶୀଘ୍ର ୧୭ ପ୍ରେରଣ କରିଦେଲ । ୧୬ ।

ସେ ମନ୍ତ୍ରୀ ଦୁହେଁ ସୈନ୍ୟଗଣନା କରିବାରୁ ଶ୍ରୀରାମଙ୍କ ସେନାମାନେ ତାଙ୍କୁ ୧୮ ବନ୍ଧନକରି ଶ୍ରୀରାମଙ୍କଠାକୁ ଘେନଗଲେ । ୧୯ ଶ୍ରୀରାମ ଦେଖିଲାକ୍ଷଣି ସେ

ଅସପ ବର (୧) କପଟ ବଚନ କଥନ (୨)
ଛଳ [୩] ପରକଟ (୪) ବନ ଦହନ ବହନ (୫) ।୨୮।
ମଳୟ ପବନ ଚନ୍ଦ୍ର [୬] ଚନ୍ଦ୍ର [୭] ଚନ୍ଦ୍ରକର (୮) ।
ଜଳଯନ୍ତ୍ର ଭବନ ମନ ହରଷକର ।୨୯।
ତପନ (୯) ପ୍ରବଳ (୧୦) କର (୧୧) କର ପ୍ରକଟ (୧୨) ।
ସକଳ ଜନ ବର୍ଜ୍ଜନ ଗମନ (୧୩) ଅଟକ ।୩୦।
କପଟ ଶଙ୍କର ଧର (୧୭) ଖଚର କଷଣ ।
ଘଟଶ୍ରବଣ ହତ (୧୮) ଇନ୍ଦ୍ରଜୟ (୧୦) ମରଣ ।୩୨।
ଶ୍ରବଣ ଅସ୍ତ୍ର ପବର (୧) ରଣର ଗମନ (୨) ।
ଅସଂଖ୍ୟକ ବଳ ସହ (୩) ଶର ବରଷଣ (୪) ।୩୩।

---

ଦୁହିଁଙ୍କୁ ୨୦ ବନ୍ଧନରୁ ମୁକ୍ତ କରାଇଦେଲେ । ୨୧ ତଦନ୍ତର ସେ ଦୁହେଁ ଶ୍ରୀରାମଙ୍କୁ ଧନ୍ୟ ଧନ୍ୟ କହି ଆନନ୍ଦରେ ଫେରିଗଲେ ।୨୭।

ମନ୍ତ୍ରୀଦୁହେଁ ପାଇ ଦେଖିଥିବା ବିଷୟ କହିବାରୁ ୧ ରାବଣ କପଟ ବୋଲି ୨ କହିଲା । ଆଉ ୩ ଗ୍ରୀଷ୍ମକାଳ ୪ ଉପସ୍ଥିତ ହେଲାରୁ ବନସବୁ ୫ ଶୀଘ୍ର ଦୋଇ ଦଗ୍ଧ ହେଲେ ।୨୮।

ଅତଏବ ଗ୍ରୀଷ୍ମଯୋଗୁଁ ମଳୟପବନ ୬ କର୍ପୂର ୭ ଚନ୍ଦନ ୮ ଚନ୍ଦ୍ରମା ଜଳଯନ୍ତ୍ର-ମନ୍ଦିର ଚିଭୁକ୍ତ ଲୋକଙ୍କର ହରଷପ୍ରଦ ହେଲେ । ୨୯ ।

୯ ସୂର୍ଯ୍ୟ ୧୦ ପ୍ରଚଣ୍ଡ ୧୧ ରଶ୍ମି ୧୨ ପ୍ରକାଶ କରି ଲୋକଙ୍କର ବିଶେଷ ୧୩ ଗମନ ନିଷେଧ କଲେ । ଅର୍ଥାତ୍ ବାଟ ବିଶେଷ ଉତ୍ତପ୍ତ ହେବାରୁ ଯିବା-ଆସିବା ରହିତ ହେଲା ।୩୦।

ଏହି ସମୟରେ ୧୪ ରାମଚନ୍ଦ୍ର ସୈନ୍ୟ ସଙ୍ଗରେ ଘେନି ୧୫ ବାକ୍ୟାଘାତ ଯୁଦ୍ଧ କରିବାରେ ୧୬ ଅସୁରବଂଶ ନାଶ ହେଲା ।୩୧।

ତହିଁ ଉତ୍ତରେ କପଟ ୧୭ ସୀତାଙ୍କର ଦୁଃଖ ବିନାଶ ହେଲା ଏବଂ ୧୯ କୁମ୍ଭକର୍ଣ୍ଣ ଏବଂ ୧୯ ଇନ୍ଦ୍ରଜିତର ମୃତ୍ୟୁ ହେଲା । ୩୨ ।

୧ ରାବଣ ଏହା ଶ୍ରବଣ କରି ୨ ଯୁଦ୍ଧ ନିମିତ୍ତ ଗମନ କରି ୩ ଅସଂଖ୍ୟ ସୈନ୍ୟ ସହିତରେ ଶର ୪ ବୃଷ୍ଟି କଲା ।୩୩।

ସପତ ଅହ [୫] ପ୍ରକଟ ଅସଂଖ୍ୟକ ରଣ (୬) ।
ତଦନ୍ତର ଦଶକନ୍ଧ (୭) ମରଣ ବରଣ (୮) ।୩୪।

ଅବରଜ [୯] ଲଙ୍କଈଶ କରଣ ତକ୍ଷଣ (୧୦) ।
ଜଷଣ ଶବଦ ବହ (୧୧) ଅମର ବରଣ [୧୨] ।୩୫।

ଧନଦରଥର ପର (୧୧) ଗମନ ନଗର (୧୪) ।
ନରଇନ୍ଦ୍ର ପଦ ବହ [୧୫] ବନ୍ଦନ ଅମର (୧୬) ।୩୬।

ଉପଇନ୍ଦ୍ର ଅଘ ଭସ୍ମ (୧୭) ଉପଇନ୍ଦ୍ର (୧୮) ହର ।
ଜନମ ଜନମ କର ଭକତ ତବର ।୩୭।

ସମ୍ପୂର୍ଣ୍ଣ

———

୫ ଏକସପ୍ତାହ ପର୍ଯ୍ୟନ୍ତ ୬ ଅସଂଖ୍ୟ ଯୁଦ୍ଧ କରି ୭ ରାବଣ ନିଜର ମରଣକୁ ୮ ବରଣ କଲା, ଅର୍ଥାତ୍ ମୃତ୍ୟୁ ଲଭିଲା ।୩୪।

ତହିଁ ଉତ୍ତାରେ ଶ୍ରୀରାମ ରାବଣର ୯ ସାନଭାଇ ବିଭୀଷଣକୁ ୧୦ ଶୀଘ୍ର ହୋଇ ଲଙ୍କାରେ ରାଜା କଲେ ୧୧ ଜାନକୀ ଏବଂ ୧୨ ଶ୍ରୀରାମ ସମସ୍ତେ ପୁଷ୍ପକରଥମାନରେ ବସି ୧୪ ଅଯୋଧ୍ୟାନଗରକୁ ଗମନ କଲେ । ସେ ଅଯୋଧ୍ୟାରେ ୧୫ ରାଜାପଦ ଧାରଣକଲାରୁ ୧୬ ଦେବତାମାନେ ପୂଜା କଲେ ।୩୫।୩୬।

ଉପଇନ୍ଦ୍ର ଭଞ୍ଜ କବି କହିଲେ ୧୮ ହେ ରାମଚନ୍ଦ୍ର ! ୧୭ ମୋହର ପାପ ଆଶଙ୍କା ଦୂରକରି ଆପଣ ମୋତେ ଜନ୍ମେ ଜନ୍ମେ ତୁମ୍ଭର ଚରଣରେ ଭକ୍ତକରି ରଖ ।୩୭।

———

ମୁଦ୍ରଣ—ଶ୍ରୀ ଗଣପତି ପ୍ରେସ, କଟକ-୧

# ବିଜ୍ଞାପନ

ପ୍ରିୟ, ବ୍ୟବସାୟୀ ଓ ଗ୍ରାହକମାନଙ୍କୁ ଅନୁରୋଧ ଜଣା-ଉଛୁ ଆମର କଟକ ଧର୍ମଗ୍ରନ୍ଥ ଷ୍ଟୋରରେ ହିନ୍ଦୁ ଜଗତର ନାନା-ବିଧ ଉପାଦେୟ ଗ୍ରନ୍ଥ, ଭୃଗୁସଂହିତା, ପୁରୋହିତ କର୍ମକାଣ୍ଡ, ବିବାହ-କର୍ମକାଣ୍ଡ, ବହାସଲଲ ଗୀତା, ଦାଣ୍ଡୀ, ଜଗମୋହନ ( ଦକ୍ଷିଣୀ-ସମାପ୍ତଣ ), ପାତଞ୍ଜଳ ଯୋଗଦର୍ଶନ ଆଦି ଧର୍ମଶାସ୍ତ୍ରୀୟ ଗ୍ରନ୍ଥ, ପଞ୍ଜିକା, ଜ୍ୟୋତିଷ, ନଭେଲ, ନାଟକ, ଉପନ୍ୟାସ ଓ ପୁରାଣ ପ୍ରଭୃତି ପୁସ୍ତକ ବହୁସ୍ତ ଜମନ୍ତେ ଗଚ୍ଛିତ ଅଛି ଗ୍ରାହକ ଓ ବ୍ୟବସାୟୀ ମାନଙ୍କୁ ଯଥା ନିୟମରେ କମିସନ ଦିଆଯାଏ । ଏତଦ୍ ବ୍ୟତୀତ—

ସକଳ ଧର୍ମରକ୍ଷା ଓ ଜଗଜ୍ଜନଙ୍କର ସୁଖ ଲାଭାର୍ଥେ ଏକଲକ୍ଷ ଶ୍ଳୋକ ସମ୍ବଳିତ ପଦାର୍ଥ ଓ ସରଳ ଭାବାର୍ଥ ସହିତ—

**ଋକ୍, ଯଜୁଃ, ସାମ ଓ ଅଥର୍ବ**

## ଚତୁର୍ବେଦ

**ପ୍ରକାଶ ପାଉଅଛି**

ଏହା ଉତ୍କଳରେ ଓ ଉତ୍କଳାକ୍ଷରରେ ସର୍ବପ୍ରଥମ, ମୂଲ୍ୟବାନ ଅଦ୍ୱିତୀୟ ବିଶାଳ ଗ୍ରନ୍ଥ । ଗ୍ରାମର ପ୍ରତ୍ୟେକ ପାଠାଗାର ଓ ଦେବ-ମନ୍ଦିରରେ ପାଠକରି ସୂତଙ୍କୁ ବୁଦ୍ଧି ସ୍ୱ, ସ୍ୱ ଧର୍ମରକ୍ଷା କରନ୍ତୁ ।

ଅନୁମାନିକ ଚତୁର୍ବେଦର ମୂଲ୍ୟ—ଟ ୪୦୦-୦୦ ସମ୍ଭାବିତ

---

—ପ୍ରକାଶକ ଓ ପ୍ରାପ୍ତି ସ୍ଥାନ—

## ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋପ୍ରାଇଟର—ଶ୍ରୀ ଗଦାଧର ସାହୁ

ଅଲିଶାବଜାର କଟକ-୨ .ଫୋନ ନମ୍ବର ୨୪୭୯୨

